# ଋତୁଗୁଚ୍ଛ





ରାଜା ଶ୍ରୀ ଜଗନ୍ନାଥ ଦେବ ବର୍ମା



ଶ୍ରୀ ଶ୍ରୀ ଶ୍ରୀ ଜଗନ୍ନାଥ ଦେବ ହରିଚନ୍ଦନ ବର୍ମା ଜଗଦ୍ଦେବ
ରାଜାବାହାଦୁର ।




ରାଗ-ବସନ୍ତ ।

ଶିଶିରକୁ ଦୂରକରି ଋତୁରାଜ ଗଲ୍ ପୂରି
ଅଦ୍ଭୁତ ଯପନ୍ତି ଧରି ଖେଳ ଆଚରି,
ସୈନ୍ୟ ସାମନ୍ତ ସଙ୍ଗତେ ଯଥା ନୃପତି ଜଗତେ
ତେଜି ଦୁର୍ଜନ, ପ୍ରକାଶି ସଙ୍ଗର ଶିରୀ । ୧ ।

ପୁଷ୍ପବାଣୀ ଅଜି ଅଜି ସଜ୍ଜିକ ଭରଜି ସାଜି
ବନ୍ଧୁପଣେ ବଢାଇଲ୍ ମଧୁ ମାଧୁରୀ,
ପ୍ରେମୀୟ ବମନ ବର୍ଷି ପ୍ରଭୃତି ସାମନ୍ତ ଶ୍ରେଣି
ଦେଵଲେ ଦେଵଲେ ଦୂରୀକୃତ କର୍ମ ସୁନ୍ଦର । ୨ ।

ଶୋଭେ କାମ ନାଟେଶ୍ୱର- ଯରେ ଭରତ ବିହାର
ନୃତ୍ୟ ଚନ୍ଦ୍ର ପେନଲ୍ କୁସୁମ ରଜ,
ଅଭିନବ କିଶଳୟ ଆଦ ପରିବାରଚୟ
କଲ୍ ଅବେଦଣ ପାର୍ଶ୍ୱେ ପାଦପଙ୍କଜ । ୩ ।

ଭୂତପତ୍ର ଲୁଚା ଧୀରେ ପ୍ରବେଶି ସୃଷ୍ଟି ବନରେ
ପ୍ରକାଶିଲ୍ ସତ୍ୟ ସଣ ନରଖି ଓଜ,
ଦୁର୍ଜନଜନ ସଙ୍ଗ ଦୂରେ ପରି ଦ୍ୱର ନଷ୍ଟ
ରଦନ୍ତ ସିନା କୁଣ୍ଡଳ ସାଧୁ ସମାଜ । ୪ ।

ଅଭିନବ ପୁଷ୍ପବତୀ ଗୋଲାପ, କୁନ୍ଦ, ସେବତୀ,
ବିରଚିଲେ ନାନାରଙ୍ଗେ ବିହାର ମୋଦ,
ପ୍ରିୟତମ ବନ୍ଧୁ ତରେ ବିଲୋକ କେବା ଯସାରେ
ଆନନ୍ଦ ନରଖି ମନେ ଚିର ଅବାଧ । ୫ ।

କିବା ମଧୁ ସେନାପତି        କେଶରେ ସାଜି ମୂରଛି
ହୋଇଅଛି ଅବତୂର୍ତ୍ତ କୁପିତ ଚିତ୍ତେ,
ପୁଷ୍ପମଧୁ ଧନୁ ଧରି        ଚୂତାଙ୍କୁର ଶରବଳି
ଚମ୍ପକମାଳା-ଗୁଣେ ଯୋଡ଼ି ନୟୁତେ । ୬ ।

ପ୍ରେମିକ ପ୍ରେମିକା ଜନ        ଘନ ରସ ସିକ୍ତ ମନ
ଅନାୟାସରେ କରିବ କନ୍ଦଦାରଣ,
ଅପରାଧ ସୁବିଚାର        ନଥାଇ ଲେଶମାତର
ବନ୍ଧିବ କିବା ମାନିନୀ ମାନ ଖଣ୍ଡନ । ୭ ।

ଦେଖି ବସନ୍ତ ଆଗମ        ସୁଖୀ ହୋଇ ସର୍ବ ଦ୍ରୁମ
କୁସୁମ କୋରକଚୟେ ହେଲେ ମଣ୍ଡିତ,
କାହିଁ ନୀଚ ଶସ୍ୟ ସ୍ତୁର        ବୁଝନ୍ତା ମର୍ଯ୍ୟାଦା ସାର
ବହୁ ଅମରଷ ଗୁଣ ପର୍ଣ୍ଣେ ହେଲା ସ୍ଖଳିତ । ୮ ।

ଚୋର ସଲ୍ଲିଳାଗନ୍ଧ        ଦେଖି ବସନ୍ତ ଉଦୟ
ସାଜିଦେଲା ପଦ୍ମିନୀଙ୍କୁ ସୁମନକୁଳେ,
ମଧୁପକ ମତ୍ତଆଳି        କଳିକାର ବେଢଣ ଲୋଳ
କହେ ଅମର୍ଯ୍ୟାଦା ବାକ୍ୟ ଝଙ୍କାର ଛଳେ ।୯।

କାମିନୀ ଚିତ୍ତ-ଭବନ-        ଜନତ କୁସୁମ ବାଣ
ଦେଲା ସନ୍ତାପ ନରତେ ବନିତା ମନେ,
ଅଗ୍ନିସମ କୁଳାଙ୍ଗାର        ଉପୁଜିଲେ ବଂଶେ ନର
ରଖଇ କି କୁଳ ଆଉ ଏହି ଭୁବନେ । ୧୦ ।

ବହିଲ୍ ସୁଗନ୍ଧଶୀତ  ମନ୍ଦ ମନ୍ଦରେ ମାରୁତ
ବିଶ୍ୱଜନ ମନକଲ୍ ମୋଦ ସୁବାସେ,
ଅଷ୍ଟାଙ୍ଗ ଯୋଗେ ନିରତ  ବିଷ୍ଣୁ ମନ୍ତ୍ରେ ଦୀକ୍ଷିତ
ଜନ ଶୁଦ୍ଧ ଚିତ୍ତ ଯଥା ଶ୍ରୀପଦ ଆଶେ । ୧୧ ।

ପ୍ରଦୋଷ ହେଲେ କହେଲ୍  ରଜନୀ ରମ୍ୟ ହୋଇଲ୍
ସକଳ ଚିତ୍ତ ରଞ୍ଜକ ଗୁଣ ସମ୍ପଦେ,
ସ୍ୱଭାବେତ୍ ଗୁଣବନ୍ତ  ବାସର ଜନଙ୍କ ହିତ
ନୁହନ୍ତା ରମ୍ୟ କେସନେ ମଧୁ ପ୍ରମୋଦେ । ୧୨ ।

ଯୁବତି ଜନକଜପନେ  ରତନମେଖଳା ଧ୍ୱନେ
ରଜତସୋପାନ ଶୁଚିବାପିକାଜଳ,
ଅମୃତ କର କିରଣ  କର୍ପୂର ସ୍ୱଚ୍ଛ ବରନ,
ସୌଭାଗ୍ୟେ ପୂରିଲେ ନିତି ରମଣୀକୁଳ । ୧୩ ।

ସହକାର ତରୁବର  ମନମଥର କୁମାର,
ଶର ନିର୍ମାଣିଲେ ଚୂତ ଅଙ୍କୁର ଛଳେ,
କେ କହିବ ତା' ସୌଭାଗ୍ୟ  ହେଲା ନାରୀପୂଜାଯୋଗ୍ୟ
ବସନ୍ତ ପୂଜନ ବିଧି ତାହାର ତଳେ । ୧୪ ।

କୁସୁମ୍ଭ ରାଗେ ରଞ୍ଜିତ  ବସନ ଅତି ଶୋଭିତ
ରମଣୀଙ୍କ ପରିଧାନେ ହେଲେ ମଣ୍ଡିତ,
ଅଶେଷ ବିଦ୍ୟାନିପୁଣ  ଅଗ୍ରାକର ନୃପଜନ
ଲଭେ ଜଗତେ ବିଖ୍ୟାତି ଫଳେ ଯେମନ୍ତ । ୧୫ ।

କୁଙ୍କୁମ ଘଟେ ରଞ୍ଜିତ ଅଂଶୁକ ହୋଇଣ ରକ୍ତ
ହେଲା ରମା ଉରସରେ ମୁଖ୍ୟାବରଣ,
ସାଧୁ ଜନ ସଙ୍ଗେ ସଙ୍ଗ ଛଡ଼ାଇ ସଙ୍ଗ ବରଙ୍ଗ
ଚଢାଏ ଉନ୍ମତ୍ତ ପଥେ ମାନଦଣ୍ଡେ । ୧୬ ।

ପ୍ରଦୀପ ଦର୍ଶିନୀ ବାଳା କନ୍ଦର୍ପ ପୂଜନେ ଭଲ୍ଲ
ସାଜିଲା ବେଶ ବସନ୍ତ କୁସୁମମୟ,
ସ୍ଫୁଟ ନବ କର୍ଣ୍ଣିକାର କର୍ଣ୍ଣାବତଂସଚ୍ଛଳର
କାମିହୃଦେ ଜାତ କରେ ଅନଙ୍ଗଭୟ । ୧୭ ।

ନବୀନ ନୀରଦ ନୀଳ ସୁନ୍ଦର ଚୂର୍ଣ୍ଣ କୁନ୍ତଳ
ଶୋଭଇ ତହିଁ ଅଶୋକ ପୁଷ୍ପସ୍ତବକ,
ନୀଳମଣି ସୁଭାଜନେ ମାଣିକ୍ୟ ସ୍ଥାପିତ ଯେସନ୍ତେ
କିବା କାମଶରକାମିରକତ ମୁଖ । ୧୮ ।

ନବ ପୁଷ୍ପିତା ନଆଳୀ କୁସୁମ ରଚିତ ମାଳୀ
ଲମ୍ବିତ ହୋଇଛି ବାଳା ଗଳଦେଶରେ,
ବିକସିତ ଇନ୍ଦୀବର ମାଳାମେଖଳା ସୁନ୍ଦର
ଦିଶେ ଶରଚଯାଗ୍ରୁ କାମଧନୁ ପ୍ରକାରେ । ୧୯ ।

ବାଳା ଉନ୍ନତ ଉରସ ବାସ ଚନ୍ଦନେ ସରସ
ତହିଁ ପୁଷ୍ପହାର କେତେ ଅଛି ଯତନେ,
ବଳୟ ଅଙ୍ଗଦ ଚୂଡ଼ି ବସନ୍ତପୁଷ୍ପେ ତସ୍ପାର
ବଢାଏ ଭୁଜବଲ୍ଲୀର କାନ୍ତି ବନ୍ଧନେ । ୨୦ ।

ପୀନନତମ୍ବଜଘନ ବାଳା କାମାତୁର ମନେ
ଖଞ୍ଜିଲ୍ଲା ବହୁପ୍ରକାରେ କେତେ ପ୍ରସୂନ,
ତା'ଶୋଭା କେବା ବର୍ଣ୍ଣିତ କରିବାକୁ ସମରଥ,
ଅନଙ୍ଗର ସତେ ସେତ ସାୟକାସନ । ୨୧ ।

ବାଳାର ରମ୍ୟ ବଦନ ସତେ କାଞ୍ଚନନଳିନ
ତହିଁ କେତେ ଶବ୍ଦ ଲେଖିଥିଲା ସୁନ୍ଦରୀ,
ସ୍ୱେଦବିନ୍ଦୁ ରତାନ୍ତରେ ଧାଡ଼ି ଧାଡ଼ି ହୋଇଥିରେ,
ଝଟକିଲା ମୁଖେ ତାହା ମୁକୁତାପରି । ୨୨ ।

ପଡ଼ିଗଲେ ବାଳାମଣି ଲଜ୍ଜାବଶେ ନତାନନୀ
ଲୁଗୁଇ ଲୁଗୁଇ କଲା ମାବାଶଥିଲ,
ହୋଇଣ କାମେ ଅକୁଳ ଉତ୍ତଆଶେ ସ୍ୱାମୀବର
ଆଉଜଇ ପଡ଼ିପରେ ହୋଇ ବନ୍ଧୁଳ । ୨୩ ।

ଦଶିଲ୍ଲା ଦେହ ପାଣ୍ଡୁର ଜର୍ଜିଲା ଅଳସ୍ୟଭର
ବାରଂବାର କୃମ୍ଭାବଶେ ହେଲା ଅଥୟ,
ଅନଙ୍ଗ ଅଙ୍ଗନା ଅଙ୍ଗେ ବଢ଼ାଇଲା ଶୋଭା ରଙ୍ଗେ
ସେହି ସୁଷମା ହୋଇଲା କାମୁକଧେୟ । ୨୪ ।

ମଦିରାପାନେ ଅଳସ ଲୋଲନୟନ ବିଳାସ
ସ୍ତୁରୁଥିଲା ଗଣ୍ଡଦେଶ ପ୍ରେମିକାଙ୍କର,
ଉନ୍ନତ ଭାର କଠିନ ଗମ୍ଭୀର ମଧ୍ୟ ମୋହନ
ପୃଥୁଳ ଘନଜଘନ ହେଲା ସନ୍ଥର । ୨୫ ।

ଜର୍ଜ୍ଜିଲା କାମ ବିକାର    ମିଥ୍ୟା ନିଦ୍ରାରେ ତତ୍ପର
ଅଳସ ହୋଇଲା ଅଙ୍ଗ ବିଳାସିନୀ'ର,
ବାକ୍ୟ ହେଲା ଜଡ଼ ଜଡ଼    ଅବ୍ୟକ୍ତ ଅତି ମଧୁର
କଟାକ୍ଷ ଭଙ୍ଗି ବିଭ୍ରମ କୁଟିଳତର । ୨୬ ।

ପ୍ରିୟଙ୍ଗୁ ଚନ୍ଦନ ରସ    ମୃଗନାଭି କୁଙ୍କୁମାଂଶ
ମିଶାଇଣ କାଳୀୟକେ ସମାରତନେ,
ବକ୍ଷୁର ବଶୀକରଣ    କାମେ ସରସ ହୋଇଣ
ଲେପିଲେ ସ୍ତନ ମଣ୍ଡଳେ ଅତି ଯତନେ ।୨୭ ।

ଶୋଣିତ ପାଟଳ ପୀତ    ନାନା ରାଗେ ସୁରଞ୍ଜିତ
କାଳାଗୁରୁ ଧୂପଧୂମେ ଚରବାସିତ,
ସୁନ୍ଦର ସୂକ୍ଷ୍ମ ବସନ    ଭାବ ପୁରୁଷ ମୋହନ
କଲା ପରିଧାନ ସୁଖେ ନବ ଯୋଷିତ । ୨୮ ।

ମାକନ୍ଦରୁ ମକରନ୍ଦ-    ଆସବ କୋକିଳବୃନ୍ଦ
ପିଇଲେ ହରଷ ମନେ ଆକଣ୍ଠ ଭରି,
ସ୍ୱଭାବେ ସେ ଦ୍ୱିଜବର    ଜାଣେ କୌଳିକ ଆଚାର
ତେଜନ୍ତା ଅମୃତ ପାନ କବା ବିଚାର । ୨୯ ।

ଉନ୍ମାଦ ହୋଇଲା ଜାତ    ସେହିକ୍ଷଣି ପରଭୃତ-
ଯୁଗଳ ହୋଇଲେ କାମ ରାଗେ ମୋହିତ,
ପରସ୍ପରରେ ଚୁମ୍ବନ-    ରସେ ରଚିଲେ କ୍ରୀଡ଼ନ
ହେଉଁ ଏକଡାଳୁ ଅନ୍ୟ ଡାଳେ ଝଂପିତ ।୩୦।

ଚନ୍ଦ୍ର ରସେ କଷାୟିତ କଣ୍ଠେ ଛାଳେ ପରଭୃତ-
ମଧୁର ସଙ୍ଗୀତାମୃତ ପଞ୍ଚମ ତାନେ,
ତେଡ଼ର ଶ୍ରବଣ ସମ୍ପୁଟ ରହୁ ଉଦ୍ୟାନ ନିକଟ
ଶୁଣିଲେ ମୋଦେ ପ୍ରେମିକ ପ୍ରେମିକା ଜନେ ।୩୧।

ମଧୁପ ଯୁବକ କାହିଁ ହୃଷ୍ଟପୁଷ୍ପାସବ ପିଇ
ଗୃଷ୍ଟ କହେ ମଧୁପୀକୁ କେତେ ଭଙ୍ଗିରେ,
ନବମାଳିକା ଶିଖରେ ବସିଣ କାହିଁ ଭ୍ରମରେ
କାମଜୟଗୀତ ଗାଏ ମତ୍ତ ଚିତ୍ତରେ । ୩୨ ।

ମାକନ୍ଦିକ ରସାଳ ଦ୍ରୁମ ପଲ୍ଲବକରେ କୁସୁମ
ଧରି ମନ୍ଦ ପଢ଼େ ତାନ ମଧୁପ ସ୍ୱନେ,
ପାଶକୁ ଆସିବା ଦେଖି ଝାଡ଼ଣ କରେ ପରଖି
ଉଚ୍ଛାହିତ ହେବେ କାମୁକ କାମୁକୀ ଜନେ । ୩୩ ।

ଅଶୋକ ପାଦପ ବର କାମର ଅନଳଗର
ପ୍ରବାଳ କୁସୁମେ ରକ୍ତ ନିରନ୍ଦଦଶେ,
ଦର୍ଶନ ମାତ୍ରେ ପଥିକ ହୁଏ ହୃଦୟେ ସଶୋକ
ବଳେ କାମୀକାମିନୀଙ୍କ ହରେ ବିବେକ । ୩୪ ।

ଦଶେ ବାସନ୍ତିକା ଲତା ମଧୁପଗଣେ ଚୁମ୍ବିତା
ମନ୍ଦାନିଳେ ଅଙ୍କୁଲତା ହୁଏ ନିରତେ,
ତାଦେଖି କାମୁକଗଣ- ଧଇର୍ଯ୍ୟ ହୁଏ ଭଞ୍ଜନ
ନିଜସ୍ୱ କାର୍ଯ୍ୟରେ ମନ ଲୁହେ ନିଶ୍ଚତେ ।୩୫ ।

କୁସୁମିତ ସହକାର-　　ଶାଖା କମ୍ପନେ ଚତୁର
　　ଅଳି ମିଥୁନ ରହସ୍ୟ କରୁ ପ୍ରଚୁର,
ମନ୍ଦ ମନ୍ଦ ସମୀରଣ　　ବନ୍ଧ କଲା ଉଚାଟନ
　　ମିଥୁନ ମନ ସେଯେଣୁ ଦୁଷ୍ଟ ଶେଖର । ୩୬ ।

ସୌଭାଗ୍ୟେ ମଦ ଦୃପ୍ତ　　ଯେତେଥିଲେ ଲତାବ୍ରାତ
　　ଉଦ୍ୟାନେ ଦେଖି ତାହାଙ୍କୁ କଳକାଛଳେ,
ଉପହାସେ କୁନ୍ଦଲତା　　ନଜାଣି ଗୌରବ କଥା
　　ଛାଡ଼ଇ ଉନ୍ନତ ଜନ ପନ୍ଥା ସରଳେ । ୩୭ ।

ଶିଥିଳ କାଞ୍ଚନ କାଞ୍ଚୀ　　ଦେଇ ଲଜ୍ଜା ଗନ୍ଧ ମୂର୍ଚ୍ଛି
　　ଏକାବଳୀ ଗୃରୁ କଣ୍ଠା ଉତ୍କଣ୍ଠାଭରେ,
ପଞ୍ଚଶର ପଞ୍ଚଶରେ　　ଅତି ବ୍ୟଥିତ ମନରେ
　　ନକ୍ଷେପେ ପୁରୁଷେ କୋଣ ଦୃଷ୍ଟି ସନ୍ଧୁରେ ।୩୮।

ଉନ୍ମଦ ଅଳି କୋକିଳ　　କର୍ଣ୍ଣିକାର ମନୋଜ୍ଜ୍ୱଳ
　　ଆବର ଚୂତ ବକୁଳ ମଧୁଦସେ,
ଦେଖାଇ ଅନଙ୍ଗ ରଙ୍ଗ　　କରଟବ ସମାଧି ଭଙ୍ଗ
　　ହେଲା ଯୋଗିଜନଙ୍କର ଏହୁ ମାନସ । ୩୯ ।

ଏବେ ମଳୟ ପବନ　　ଦୁଜେ ପୁଂସ୍କୋକିଳଗାନ
　　ପୁଷ୍ପିତ ଗୃରୁ ଉଦ୍ୟାନ ନିର୍ମଳ ଶଶୀ,
ସ୍ୱଚ୍ଛ ଗଗନ ମଣ୍ଡଳ　　ଶ୍ୟାମଳ ଅବନୀ ତଳ
　　ପହଞ୍ଚି ଏହି ପ୍ରକାରେ ବସନ୍ତ ଆସି । ୪୦ ।

# ଗ୍ରୀଷ୍ମ ।

## ରାଗ-ବଙ୍ଗଳାଶ୍ରୀ ।

ଗ୍ରୀଷ୍ମ ବିଷଧର ଅଛି ଭୟଙ୍କର
ଟେକି ଫଣା ପରଚଣ୍ଡ,
ଗରଳ-ଜ୍ୱଳନ ଜ୍ୱାଳା ଉଦ୍ଗୀରଣ-
କରି ଅଇଲା ଉଦ୍ଦଣ୍ଡ । ୧ ।

ହେଲା କବଳିତ ଦକ୍ଷିଣ ମରୁତ
ଭଜିଲା କ୍ଷୀଣତା କ୍ରମେ,
ଯୋଚିଲା ରଞ୍ଜନ ପୂର୍ବ ପରି ଧନ
ଆତପ ଫସର୍ଗୁ ଭ୍ରମେ । ୨ ।

ଦୁର୍ଜନର ସଙ୍ଗ ସୌଜନ୍ୟ ବିଭଙ୍ଗ
କରଇ ଅଦୃଷ୍ଟ ବଳେ,
ସାଧୁତା ନାଶଇ ଦୁର୍ନାମ ରଟାଇ
କିବା ନକରଇ କାଳ । ୩ ।

ତ୍ରିକାଳର ବନ୍ଦ୍ୟ ରବି ହେଲେ ନିନ୍ଦ୍ୟ
ତେଜି ନିଜ ସୌମ୍ୟ ଗୁଣ,
ଗ୍ରୀଷ୍ମ ସହବାସେ ଛବି ତାପ ବଶେ
ଧଇଲେ ଦୁର୍ଜନ ପଣ । ୪ ।

ରସା ରସ ବାର କଲେ ଅପହାର
ନିଜ ମର୍ଯ୍ୟାଦା ନଗଣି,
ସାଗ୍ର ଝିଲ ତଳ ହେଲା କ୍ଷୀଣ ଜଳ
ଦିବାକର କରେ ପୁଣି । ୫ ।

ଉଦ୍ଧାନ୍ତ ମନ୍ମଥ କ୍ରମେ ହେଲା ଶାନ୍ତ
ଦେଖେ ବାସର ମଳିନ,
କୁଣ୍ଠିତ ନୃମଣି ପାଳିତ ଧରଣୀ
ଅଳପ କାଳେ ଯେସନ । ୬ ।

କୁମୁଦ କହ୍ଲାର ପଦ୍ମ ଇନ୍ଦୀବର
ସମ୍ପଦେ କ୍ଷୀଣ ସରସୀ,
ତଡ଼ାଗ ନିର୍ଜଳ ତେଣୁ ପକ୍ଷୀ କୁଳ
ନିଶୋଭନ୍ତ ତହିଁ ବସି । ୭ ।

ଧନ ଯିନା କରେ ବଡ଼ ମାନ ନରେ
ନିର୍ଦ୍ଧନର ନାହିଁ ସ୍ଥାନ,
ହରାଏ ଗୌରବ ପାଏ ପରାଭବ
ସଂସାରେ ଏହା ନିଦାନ । ୮ ।

ପଲ୍ଲବ ପ୍ରସୂନ ଫଳେ ହୋଇ ହୀନ
ନିଶୋଭଇ ତରୁବର,
ଉଦ୍ୟାନର ଲତା ନୁହେ ନୃତ୍ୟରତା
ପାଇ ମନ୍ଦାନିଳ ସାର । ୯ ।

ଜଗତ ଦେଖଇ ଲକ୍ଷ୍ମୀ ହୀନ ହୋଇ
କ୍ରୂର ହେଲେ ଦିନପତି,
ଖଳ ରାଜା ରାଜ୍ୟେ ଯତ୍ନେ କେବା ନିଜେ
ରଖି ପାରଇ ସମ୍ପତ୍ତି । ୧୦ ।

ପ୍ରଖର ଆଦିତ୍ୟ ସଂସର୍ଗେ ତାପିତ
କ୍ଷିତି ତେଜିଲା ଶୀତଳ,
ଦୁର୍ବିଷହ ଭ୍ରମେ ବାଳକ ଯେସନେ
ବ୍ୟର୍ଥ କରେ ପଢ଼ା କାଳ ।୧୧।

ସୁଖ ପରେ ଦୁଃଖ ଦୁଃଖ ପରେ ସୁଖ
ହୁଅଇ ଏହା ନିୟମ,
ବସନ୍ତ ବାସର ପରେ ଗ୍ରୀଷ୍ମ କାଳ,
ନୁହଇ ସଙ୍ଗତେ କମ ।୧୨।

ବାଟ ଘାଟ ହାଟ ବନ ଗିରି ତଟ
ତାପକୁ କଲେ ଉଦ୍ଗାର,
ଜୀବ ଜନ୍ତୁ ଗଣ- ଅନ୍ୟୋନ୍ୟ ମିଳନ
ଦ୍ୱାରେ ହୋଇଲା ଦୂର ।୧୩।

ପଗଣ ବିକଳେ ଲୁଚିଲେ ଅଖିଳେ
ଖୋଜି ନୀଡ଼ ଥଣ୍ଡା ସ୍ଥାନ,
ପଢ଼ିଲେ ବିବାଦ ମର୍ଯ୍ୟାଦା ସମ୍ପଦ
ଆଉ ନ ରଖଇ ଜନ ।୧୪।

ନୀରବ ନିଶ୍ଚଳ ଦିବସ ସକଳ
ନାହିଁ ମୋଦେ ଗତାଗତ,
ନିଦ୍ରା କବଳେ କେ'ଅବା ପଡ଼ିଲେ
ରହେ ନୋହିଣ ଆରତ ।୧୫।

ହୋଇଲା ପ୍ରଶାନ୍ତ- ମଞ୍ଜୁଳ ଦନାନ୍ତ
ମଣ୍ଡିତ ସାନ୍ଧ୍ୟ ଗଟନେ,
ବଭିହେବା ଭଳି ବଭ୍ରବସ୍ତ୍ର ବାଳି
ପିନ୍ଧନ୍ତି ରଙ୍ଗ ବସନ । ୧୬ ।

ଚନ୍ଦ୍ର ତାରା ତା'ର ବନ୍ଦୁ ଚନ୍ଦନର
ନକ୍ଷତ୍ର ଚନ୍ଦନ ପାଠୀ,
କାଳିମା ବଦର- ପତ୍ର ଦୁର୍ବାଙ୍କୁର
ଅକ୍ଷତ କୃତ୍ତିକା ଧାଠୀ । ୧୭ ।

ଶଶାଙ୍କ ବଦନ, ଅମୃତ ଶୋଭନ-
ଚନ୍ଦ୍ରିକା ସୁନ୍ଦର ହାସ,
ଏ ଉତ୍ସବ କ୍ଷଣ ଦେଖିଣ କେଜନ
ହୋଇନାହିଁ ପରିତୋଷ । ୧୮ ।

ଆହ୍ଲାଦ ଜନକ ଅମୃତ ମୟୂଖ-
କର ରୌଦ୍ରଗେ ପ୍ରସର,
ଦବା ଅବସନ୍ନ ପ୍ରାଣୀ ଗଣ ପ୍ରାଣ
ତୋଷେ ସିଞ୍ଚି ଶାନ୍ତ ବାରି । ୧୯ ।

ପରୋପକାରିଣୀ ଚନ୍ଦ୍ରିକା ସେକ୍ଷଣି
ହେଲା ଜଗତେ ଅର୍ଚ୍ଚିତା,
କୃତଜ୍ଞ ପରାଣ ଅପରାଧ ଶଙ୍କା
ଧରଇ ନାହିଁ ସର୍ବଥା । ୨୦ ।

ନଶା ନଶା ପଛ   ବସ୍ତ୍ର ଦିବ୍ୟ କାନ୍ତି
ହୃଅନ୍ତେ ରମ୍ୟ ମିଳିତ,
ପ୍ରେମିକ ପ୍ରେମିକା   ବଟଙ୍କ ଚନ୍ଦ୍ରିକା-
ଗୃନ୍ଦନୀ ପରେ ଭୁରିତ । ୨୧ ।

ଅର୍ଚ୍ଚନାର ପାଇଁ   ଶରୀର ସଜାଇ-
ଦେଲେ ଦିବ୍ୟ ବିଭୂଷଣେ,
ଗଳେ ମୁକ୍ତାହାର   ସ୍ୱର୍ଣ୍ଣ ଅଳଙ୍କାର
ବକ୍ଷ ଲେପିଲେ ଚନ୍ଦନେ । ୨୨ ।

ମାଡିଗଲେ ପାଦେ   ରଜତ ଭୁଜନେ
ଆସିପର ମଳମଧୂ,
ଏକଲବ୍ୟେ ତହିଁ,   ବୀଣାଯନ୍ତ୍ର ବାଇଁ
ଆରମ୍ଭେ ସଙ୍ଗୀତ ବଧୂ । ୨୩ ।

ବିବିଧ ମୂର୍ଚ୍ଛନା   ଆଳାପ ରଚନା
ପଞ୍ଚମସ୍ୱର ମାଧୁରୀ,
ଅନାୟାସେ ଫୁସ   ହୃଦୟ ସରସ
ବିହ୍ୱଳ ଗ୍ରୀଷ୍ମେ ସୁନ୍ଦରୀ । ୨୪ ।

କେବଳ ରମଣୀ   ଖଞ୍ଜି ଦିବ୍ୟ ମଣି
ଉଡ଼ିଲା ସୂକ୍ଷ୍ମ କାଞ୍ଚୁଲି,
ପିନ୍ଧି ଚୀନାମ୍ବର   ପାଟଳ ସୁନ୍ଦର
ମର୍ଦ୍ଦିଲ ଯନ୍ତ୍ର ଗୃଙ୍ଖଳା । ୨୫ ।

ରମ୍ୟ ଅଟ୍ଟାଳିକା ପରେ କେ ବାଳିକା
ଜଳଯନ୍ତ୍ରେ କରୁ ସ୍ନାନ,
କୁନ୍ତଳ କଳାପ ସୁବାସିତ ଧୂପ-
ଧୂମେ ଶୁଖାଇ ବଦନ । ୨୬ ।

ଅଲକ୍ତକରସେ ଚରଣ ସରସେ
ମଣ୍ଡି ନୂପୁର ଲଗାଇ,
କଳହଂସ ଗତି- କଲ୍ଲି ହଜପତି
ପାଶକୁ ମୃଦୁବେଗ ହୋଇ । ୨୭ ।

କାଞ୍ଚନ ମେଖଳା କଟିରେ ବାନ୍ଧିଲି
କେଉଁ ପ୍ରେମିକା ରତନ,
ସୀତାର ବଜାଇ ଗୀତ ଗାଇ ଗାଇ
ବଲ୍ଲଭେ କଲ୍ଲି ଗମନ । ୨୮ ।

ତରୁଣୀ ରତନ ଘନ ଯଉବନ
ଭରେ ରମଣୀୟ ଦେହା,
ସ୍ୱେଦ ବିନ୍ଦୁ-ମୁକ୍ତା ପୁଞ୍ଜେ ସୁରଞ୍ଜିତା
ତେଣୁ ଶୋଭୁ ଗୁନ୍ଦେ କୁହା । ୨୯ ।

ସ୍ଖଳିତ ବ୍ୟଜନ ନର୍ତ୍ତିତ ପବନ-
ପ୍ରବାହେ ପଡ଼ି ପାରୁଶେ,
ଗୀତ ଗାନ କଲ୍ଲି ବଜାଇ ବେହୁଲି
ବୁଡ଼ଯାଇ କାମରସେ । ୩୦ ।

ଗବାକ୍ଷ ପାଖରେ    ଅଟ୍ଟାଳିକା ପଟ୍ଟର
ପତି ପାଶେ ବସି ରମା,
ତାଙ୍କ ହସ୍ତର    ହାର ଦୋହଲଇ
ରସି ରସେ ରସଧାମା । ୩୧ ।

ଟଗାଲଇ ଗେଲଇ    ଗୀତ ଗାଇ ଗାଇ
ହାସ ଭରିବ ଅଧରେ,
କର୍ପୂର ଚନ୍ଦନ    ବୋଳିଲା ବଦନ
କାମୁକ ଅଧଘନରେ । ୩୨ ।

ଆଲସ୍ୟ ବିବଶା    ପାଇମଧୁ ନିଶା
ଶୋଇଲା ପତି କୋଳରେ,
ତା'ମୁଖ ମାଧୁରୀ    ଦେଖି ଫୁସଥର
ରସ ବିବଶ ଅନ୍ତରେ । ୩୩ ।

ପକ୍ୱ ସହକାର    ସୁକଣ୍ଟକଫଳ
ବାସନାମୟୀ କଦଳୀ,
ସୁଲଭଟି ଯହିଁ    ନିରତେ ହୁଅଇ
ଦେବଭୋଗ୍ୟ ରସାବଳୀ । ୩୪ ।

ଚକ୍ରବାତ ଜାତ    ହୋଇଣ ସନ୍ତତ
ସ୍ଥଳ ପଙ୍କଜ କାନନେ,
ବିହରନ୍ତି ରଜ-    ସ୍ୱର୍ଣ୍ଣଦଣ୍ଡେ ସଜ୍ଜ
ଶିତଛନ୍ଦ ହୁଏ ମନେ । ୩୫ ।

ପଲ୍ୱଲ କର୍ଦ୍ଦମେ　　　ବରାହ ନର୍ମ୍ମେ
ଶୋଇଛନ୍ତି କାହିଁ ଗ୍ରୀଷ୍ମାରେ,
ହେଲେହେଁ ଦୁର୍ଜ୍ଜନ　　　ହୋଇଲେ ବିପନ୍ନ
ସାଧୁତା ଜନ୍ମେ ମନରେ । ୩୬ ।

ମୃଗ ଯୂଥ ଏବେ　　　ଜଳ ଭ୍ରମେ ଜବେ
ମରୀଚିକା ପ୍ରତି ଧାଇଁ,
ତୃଷାରେ ଅରତ　　　ନଇସର୍ଗ୍ୟ ଶତ୍ରୁ
ବାହୁଡ଼ ଅସନ୍ତି କାହିଁ । ୩୭ ।

ଆଶାପୂର୍ଣ୍ଣ ଜନ　　　ହାରିଦେଇ ଜ୍ଞାନ
ପଡ଼ଇ ଭ୍ରମେ ନଯୁତ,
ତେଣୁ ସାଧୁ ଜନେ　　　ଆଶା ତେଜି ମନେ
କରନ୍ତି କାର୍ଯ୍ୟ ସନ୍ତତ । ୩୮ ।

ପର୍ବତ କନ୍ଦର　　　ଜନିତ ସମୀର
ପଶି କୀଚକ ରନ୍ଧ୍ରରେ,
ଅଲୌକିକ ବଂଶୀ　　　ବାଦ୍ୟ ଯାଏ ରସି
କର୍ମୀର କାନନାନ୍ତରେ । ୩୯ ।

ଦାବାନଳ ଜାତ　　　ଦହଇ ବସନ୍ତ
ଧାଅନ୍ତି ପ୍ରାଣିଏ ତ୍ରାସେ,
ଲୋକେ ଏ ପ୍ରକାରେ　　　ବସନ୍ତ ଅନ୍ତରେ
ଗ୍ରୀଷ୍ମ ଆସି ପ୍ରବେଶେ । ୪୦ ।

# ବର୍ଷା ।।

ରାଗ-କଲହଂସକେଦାର ।

ନବୀନ ମେଘମାଳା କି ମତ୍ତଗଜ
ଅବେଦ୍ଧ ଅଟନ କି ବରଷା ରାଜ,
ଷଣପ୍ରଭା ଧ୍ୱଜେ କେତନ ସଜ
ଦମ୍ଭୋଳି ନାଦ ତହିଁ ମର୍ଦ୍ଦଳ ପଟହ । ୧ ।

ଘନ ଗର୍ଜନ ନୁହେ, ଗଜ ବୃଂହଣ
ନୁହଇ ଜଳକଣ, ମଦବର୍ଷଣ,
ଗ୍ରିଷ୍ମ ସନ୍ତପ୍ତ ଜନଙ୍କର ଶରଣ
ଆସଇ ନଷ୍ଟେ ଏହୁ ବୃଷ୍ଟି ରାଜନ । ୨ ।

କାହିଁ ଜଳଦ ଇନ୍ଦୀବର ସୁନ୍ଦର
କାହିଁ ଦଳିତାଞ୍ଜନରାଶି ପ୍ରକାର,
କାହିଁ ଗର୍ଭିଣୀ ଜନ ଚୂଚୁକ ପର
ଗଗନେ ରାଜେ ନବଘନ ମାଧୁରୀ । ୩ ।

ଚାତକ ଦ୍ୱିଜ କୁଳ ତୃଷା ଆତୁର
ଦେଖି ନବ ଜଳଦ ମାଗଇ ନୀର,
ସ୍ୱଭାବେ ଦାତାପଣ ଅଛି ଯାହାର
ନଦେଇ ରହିବ କି ସେ ଦାନ ଗୁମାର । ୪ ।

ଫଟାଣ ଦେଇଥାନ୍ତି ମହତ ଜନ
ଯାଚକଙ୍କ ମହତ୍ତ୍ୱ ମନେ ଲାଞ୍ଛଣ,
ଭବ ଏମନ୍ତ ଜଳଧର ତକ୍ଷଣ
କାତର କୋହୁ ଦେଲ ଜୀବନ ଦାନ । ୫ ।

ଅକ୍ଷୟ ଭଣ୍ଡାର ସେ ଜଳ-ଧନର
ବିତରିତ ଦାନେ କର୍ଣ୍ଣ ତାର ବଗ୍ଗର,
ଦ୍ୱିଜଯାଚକେ ଦେଇ ଅମୃତ କଣ
ସନ୍ତୋଷି ହେଲେ ଆଗେ ସନ୍ତୁଷ୍ଟ ମନ ।୬।

ସଲିଳ ମହାଭ୍ରରେ ଥିଲେ ଲମ୍ବିତ
ଗୁଣବନ୍ତ ନରଟେ ନମ୍ର ଯେମନ୍ତ,
ବହୁତ ଧାରା ବର୍ଷି ଧୀରେ ଗମଇ
ଧାରା ବରଷାଗୁଣେ ଅଧୀର ନୋହି ।୭।

ଶ୍ରବଣ ମନୋହର କରି ନିସ୍ୱନ
ଚଳେ ବଳାକାପନ୍ତି ମଣ୍ଡି ଗଗନ,
ଗୁଣୀ ଦର୍ଶନେ କାହିଁ କୋବିଦ ଜନ
ନକହି ପଦେ ଅବୋଧ ହୁଏ ମଗନ ।୮।

ବାସବ ଶରାସନ କି ମନୋହର
ନବ ରତନ କାନ୍ତି ହୁଏ ବାହାର,
ସଉଦାମିନୀ-ଗୁଣେ ସେ ବିରଜିତ
ଯୋଗ୍ୟ ସିନା ଯୋଗ୍ୟରେ ହୁଏ ଯୋଜିତ ।୯।

ନବ ରତନ ଗୃହେ କନକ ଗୁଣ
ନୋହିଲେ ବିଧାତାର କି ବଡ଼ ପଣ,
ସୁତୀକ୍ଷ୍ଣ ବୃଷ୍ଟିଧାରା-ଉଗ୍ରସାୟକ-
ଘାତେ ଲଭଇ ମହାବ୍ୟଥା ପଥିକ ।୧୦।

ବରଷା କାଳ-ଧସ୍ୱପଛ ଆଗତେ
ଧରଣୀ ସଜା ବେଶ କନ୍ଦ୍ରବା କେତେ,
ତୃଣାଙ୍କୁର-ବୈଦୂର୍ଯ୍ୟ ମାଳା ମଣ୍ଡନ-
ଧରି ଶୋଭିତ କଲ୍ଲ ନଜା-ପଘନ । ୧୧ ।

କନ୍ଦଳି ଦଳ ସତେ ବାସବ ମଣି
କେତେ ସିନ୍ଧିଲ୍ଲ ତାହା ନୁହଇ ଗଣି,
ଇନ୍ଦ୍ର ଗୋପତ ନଷ୍ଟେ ମାଣିକ୍ୟ ମାଳା
ତେଣେ ମଣ୍ଡିତ କଲ୍ଲ ନଜର ଗଲା । ୧୨ ।

ବୃଷ୍ଟା କାମିନୀ ମହାନଦୀ ସକଳ
କୋପ ସଦ୍ଗୁଣ ବେଗ ହୋଇ ପ୍ରବଳ,
ପାରୁଶେ ଥିବା ମହାଦ୍ରୁମ ଭାଙ୍ଗିଲେ
ଜନ ନିବାସ କେତେ ଭସାଇ ନେଲେ । ୧୩ ।

ନାଶିଲେ ଜୀବଜନ୍ତୁ ନିର୍ଦ୍ଦୟ ଚିତ୍ତେ
ମଳିନ ଜଳ-ବାସ ପିନ୍ଧି ତୁରତେ,
କୁଟିଳଗତି ଅଛି ବିଭ୍ରମ ଭରେ
ଚଳିଲେ ଅମର୍ଯ୍ୟାଦେ ସେ ପାରାବାରେ । ୧୪ ।

ମୟୂର ମହାନନ୍ଦ ଭର ମାନସେ
କଳାପ ବିସ୍ତାରିଛି ଅତି ସରସେ,
ବିବିଧ ରତ୍ନକାନ୍ତି ତହିଁରେ ପୂରି
ବଢାଇଅଛି ହେଲେ ରୁରୁ ମାଧୁରୀ । ୧୫ ।

ଧଇନ୍ତି ଅନୁରାଗ ମାନସେ ଭରି
ଷଡ୍ଜ ସ୍ୱରେ ତ୍ୱାଳଇ ଗୀତ ଲହରୀ,
ସେ ଗୀତାମୃତ ତାନ କର୍ଣ୍ଣ ପାନ
ମୟୂରୀ ଅଲିଙ୍ଗନେ ତୃଷିତ ମନ । ୧୬ ।

ପ୍ରିୟା ଚୁମ୍ବନ ଅଳିଙ୍ଗନରେ ମାଛି
ନୀଳକଣ୍ଠ ଭଜିଲା ଯାହିଁ ତୃପତି,
ନୃତ୍ୟ ରସରେ ତହିଁ ଗଲା ପ୍ରବର୍ତ୍ତି
କେ ବର୍ଣ୍ଣି ପାରିବ ତା' ଶୋଭା ସମ୍ପତ୍ତି । ୧୭ ।

ମଧୁରତର ମୃଦୁ ତୃଣ ଅଙ୍କୁର
ହରିଣ ଦନ୍ତ ଯହିଁ ଛିନ୍ନ ସୁନ୍ଦର,
ନବ ପଲ୍ଲବ ଆଭା କଟୋଭା ଦଶେ
ବନ୍ୟ କାନନ ଦୃଷ୍ଟିରମ୍ୟ ସରସେ । ୧୮ ।

କାହିଁ ବାଲୁକା ମୟ କାନନ ସ୍ଥଳୀ
କାସାର ନୀଳୋତ୍ପଳେ ଖେଳାଏ ଅଳି,
ତହିଁ ଜନ ନୟନ ଭ୍ରମେ ହରିଣ
ହୁଅନ୍ତି କ୍ଷଣେ କ୍ଷଣେ ବିସ୍ମିତ ମନ । ୧୯ ।

ବରଷା ରଜନୀରେ ଜଳଦ ଗଣ
ବାରମ୍ବାର କରଇ ଘୋର ଗର୍ଜନ,
ନିବିଡ଼ ଅନ୍ଧକାର ଅଛନ୍ତିପଣ
ନଲଭେ ମାର୍ଗ ତହିଁ କ୍ଷଣେ ନୟନ । ୨୦ ।

ବନ ପର୍ବତ ଗିରି ଗ୍ରାମ ସକଳ
ହୋଇଛନ୍ତି ଏକାକାର ନୁହେ ବସ୍ୱେଳ,।
କୃଷ୍ଣାଭ ଯାବକାଏ ତଥାପି ତହିଁ
କ୍ଷୀଣ ଚନ୍ଦ୍ର୍ୟତେ ଗସ୍ତା ନେରେଖି ଗୃହିଁ ।୨୧।

ନକର ମନେ ଭୟ କାମ ବିବଶେ
ଚଳନ୍ତି ନିଜ ନିଜ ପଥ ଉଦ୍ଦେଶେ,
କି ନକର ପାରଇ କାମାନ୍ଧ ଜନ
ମହତ୍ୱ ମର୍ଯ୍ୟାଦାକୁ ତେଜି ବନ୍ଧନ ।୨୨।

ଏମନ୍ତ ରଜନୀରେ କାହିଁ ରମଣୀ
ଅଛି ଭୀଷଣ ଘନ ଗର୍ଜନ ଶୁଣି,
ନକର ପ୍ରିୟ ଦୋଷ ଲେଶ ଗଣନ
ଶୟନେ ପଡେହେ ହୋଇଲ ଲଗ୍ନ ।୨୩।

ପଥିକ ପ୍ରିୟାମାନେ ଏହି ସମୟେ
ତେଜି ମାଲ୍ୟ ଭୂଷଣ ଶୂନ୍ୟ ଆଶୟେ,
ନୟନ ଇନ୍ଦୀବରୁ ବୁହାଇବାରୁ
ମଳିନ କଲେ ନିଜ ଅଧରଶ୍ରୀ ।୨୪।

ନିନ୍ଦିଲେ ଯଉବନ ସୁଖ ସମ୍ପତ୍ତି
ନିନ୍ଦିଲେ କୁଳାଙ୍ଗନା କୁଳ ପଦ୍ଧତି,
ବନ୍ଦିଲେ କୁଳଟାଙ୍କ ଆଚରଣ
ସ୍ମରିଲେ କରମ, ରଷେଣ ସ୍ଥିତି ।୨୫।

ଜମ୍ନାର ମୁଖେ ଜଳ ଧାର ବନ୍ଦଇ
ତୃଣ କାଠ ଜଜରେ ମଳିନ ହୋଇ,
ତା ଦେଖି ଭେକ କୁଳ ପନ୍ନଗ ଭ୍ରମେ
ଦେମ୍ଭେ ଯାଅନ୍ତି ଧାଇଁ ଅତ୍ୟନ୍ତ ଶ୍ରମେ । ୨୬ ।

ସହଜେ ପଦ୍ମଜାତ କୁସୁମ ବାଛି
ଭ୍ରମର ଅଭିଳାଷ ନଗ୍ରଡ଼େ ମଛି,
ତଥାପି ମୂର୍ଖପଣେ ମଧୁପ ଗଣ
କର ମଧୁରତର ସଂଗୀତ ତାନ । ୨୭ ।

ଉଦ୍ଦଣ୍ଡ ନୃତ୍ୟ କଳାରତ ମୟୂର
କଳାପ ଅଟ୍ରାକଲ୍ଲ ଦେଖି ସୁନ୍ଦର,
କାହ୍ନୁଁ ପାଅନ୍ତା ତହ୍ନୁଁ ଅଭଷ୍ଟୁରସ
କାହିଁ ପଦ୍ମନୀ କାହିଁ ପିକ୍କ ନରସ । ୨୮ ।

ନବ ଜଳଦସ୍ବନେ ବଳ ବାରଣ
ଉନ୍ମତ୍ତେ ବାରମ୍ବାର କଲା ବୃଂହଣ,
ବିମଳ ନୀଳୋତ୍ପଳ ପ୍ରଭୃତି ଗଣ
ତହିଁରେ ଯାଇ ହେଲେ ମଧୁପେ ରୁଣ୍ଡ । ୨୯ ।

କୁମୁଦପ୍ରଭ କାହିଁ ଗିରି ପଥର
ଗୈଦଟେ ବନ୍ଧଯାଏ ଗୁରୁନର୍ଷର,
ଶିଖି ଦେଖାଏ ତହିଁ ନର୍ତ୍ତନ କଳା
ଦର୍ଶନେ ଜନଚକ୍ଷୁ ଲକ୍ଷି ରହିଲା । ୩୦ ।

ସର୍ଜ୍ଜ କଦମ୍ବାର୍ଜ୍ଜୁନ କେତକୀବନ
କୁସୁମଭରରେ ପୂର୍ଣ୍ଣ ଦଶେ ଶୋଭନ,
ବିନ୍ଦୁ ବରଷାପାତେ ଜଳଦ ତହିଁ
କଉ କଲଭ ପଗ୍ ଭ୍ରମି ରଚଇ । ୩୧ ।

ମନ୍ଦେ ମାରୁତ ତହିଁ କଉ ସଞ୍ଚାର
କରଇ ଗନ୍ଧଶୈତ୍ୟ କି ଅପହାର,
ନାହିଁ ସ୍ଥୂଳଭଣିସ୍ୱ ଯେହ୍ନଲେ ଚୈର
ପରଧନ ବୋଲି କି କରେ ବଗୃର । ୩୨ ।

ଲମ୍ବିଛି କେଶଗୁଚ୍ଛ କଟି ଉପରେ
ସୁରଭି ପୁଷ୍ପ ଶୋଭେ କର୍ଣ୍ଣେ ସୁନ୍ଦରେ,
ଉରଜେ ମୁକ୍ତାହାର କି ମନୋହର
ଆସବ ମୁଖାମଦ କରେ ବିସ୍ତାର । ୩୩ ।

ବିଘୂର୍ଣ୍ଣିତ ନୟନ ପ୍ରାନ୍ତ ପାଟଳ
ସମାଏ ପଢପାଇଁ ହେଲେ ବିହ୍ୱଳ,
ଇନ୍ଦ୍ରଗୃପ ତଡ଼ିତେ ଘନ ସୁନ୍ଦର
ନାରୀଘନ ଜଘନେ କାଞ୍ଚୀ ରୁଚିର । ୩୪ ।

ଦେଖି ପଥର ହେଲେ ହେବ ସରସ
ଚେତନ ହୃଦ କେହ୍ନେ ହେବ ନୀରସ,
ପ୍ରବାସିଗଣ ଦେଖି ହେଲେ ମୋହିତ
କାମ କୁସୁମବାଣେ ଅଧୀର ଚିତ୍ତ । ୩୫ ।

ଧନ୍ୟ ରମଣୀକାନ୍ତ ବର୍ଷା କାଳ,
ବର୍ଦ୍ଧିତ ନୂତନ ମଣ୍ଡି ତରୁ ସକଳ
ମଣ୍ଡିଲା କାମିନୀଙ୍କୁ ପ୍ରମୋଦଭରେ
ଯୂଥି ମାଳତୀ ମାଳା ଶିର ଦେଶରେ । ୩୬ ।

ଚନ୍ଦ୍ର ହାରର ମାଳା ମଣ୍ଡିଲା ଗଳେ
ଦେଲା ବକୁଳ ମାଳା କୁନ୍ତଳ ତଳାରେ,
କର୍ଣ୍ଣାବତଂସ କଲା ରମ୍ୟ କଦମ୍ବ
ଉତ୍ପଳେ ମଣ୍ଡି ଦେଲା ଜଘନାରମ୍ଭ । ୩୭ ।

ଉପବନରେ ଦେଖି ଲତା ପୁଷ୍ପିତ
ନୃତ୍ୟ ଶିଖାଇ ତାଙ୍କୁ କଲା ମୋହିତ,
କେତକୀ ରଜଭରେ ହେଲା ବାସିତ
ହୋଇଲା ନୀରଧାର ପରଶେ ଶୀତ । ୩୮ ।
ସୁରଭି ସୁଶୀତଳ ମନ୍ଦମରୁତ
ପଥିକଜନ ହୃଦ କଲା ବ୍ୟଥିତ,
କୃଷକଜନେ କାର୍ଯ୍ୟ ଯୋଗାଇ ଜବେ
ବହିଲା ଅନାହତ ସରସ ଭାବେ । ୩୯ ।
କାମିନୀ ମନୋହର ସୁଗୁଣବନ୍ତ
ଦ୍ରୁମ ପାଦପଲତା ଫପାତ ମିତ,
ବିକାରହୀନ ହୋଇ ଅଟେ ଜଗତେ
ରମ୍ୟ ବରଷାକାଳ ଗ୍ରୀଷମ ଅନ୍ତେ । ୪୦ ।



# ଶରତ

## ଗୀତ-ମଙ୍ଗଳ

ଶରତ ସୁବଧୂ ସମ ବରଷାର ଅନ୍ତେ
ରଙ୍ଗେ ପ୍ରବେଶ ହୋଇଲା ଅଶିଷ ଜଗତେ । ୧ ।

ବିକଚ ମନୋଜ୍ଞ ପଦ୍ମ ସୁନ୍ଦର ବଦନ
ପ୍ରଫୁଲ୍ଲିତ କାଶ ହାସ ଅଧର ଶୋଭନ । ୨ ।

ପକ୍ୱପକ୍ୱ ଶାଳିଧାନ୍ୟ ମଧୁର ଶରୀର
ହଂସ ହଂସକରବରେ ହସେ ମନୋହର । ୩ ।

ହେଲା ପ୍ରକାଶିତ କାଶେ ଧରଣୀ ମଣ୍ଡଳ
ବିରଞ୍ଜିତ ସୁଧାକରେ ରଜନୀ ସକଳ । ୪ ।

କଳହଂସ କଳନାଦେ ମଣ୍ଡିତ ସଲିଳ
ସରୋବରେ ବିକସିତ ରମ୍ୟ ନୀଳୋତ୍ପଳ । ୫ ।

କୋକନଦ କଇରବ କହ୍ଲାରେ ଦୀପିତ
ହେଲେ ହ୍ରଦ ପୁଷ୍କରିଣୀ ତଡ଼ାଗ ସକଳ । ୬ ।

କୁସୁମିତ ସପ୍ତଛଦେ ସୁନ୍ଦର କାନନ
ବିବିଧ ପ୍ରସୂନେ ଶୋଭେ ସାରା ଉପବନ । ୭ ।

ମାଳତୀ କୁସୁମ ଶିଖା ମଣ୍ଡିଲା ଦିଗନ୍ତ
ଶେଫାଳି ସୁବାସେ କଲା ଜଗତ ମୋହିତ । ୮ ।

ସୁନୀଳ ସମ ସଲିଳ ପ୍ରକାଶ ଜଗତେ
ହାରପର ହଂସକୂଳ ମଞ୍ଜୁଳ ସତତେ । ୯ ।

ଚଞ୍ଚଳ ଶଫରୀ ଜବା ତା'ରମ୍ୟ ରସନା
ବିଶାଳ ପୁଳିନେ ଦିଶେ ନିତମ୍ବ ଘଟନା । ୧୦ ।

ଟୋଲ୍ଲାଇ ଟୋଲ୍ଲାଇ କଟେ କରେ ମନ୍ଦେ ଗଢ଼
ଆଳସ୍ୟ ବିବଶା ନଟେ ଲଭିଅଛି ଶ୍ରାନ୍ତି । ୧୧ ।

ମୃଣାଳ ରଜତ ଶଙ୍ଖ ସଦୃଶ ଧବଳ
ଖଣ୍ଡ ଖଣ୍ଡ ମେଘ ବାତେ ଗମଇ ଚଞ୍ଚଳ । ୧୨ ।

ଦିଶେ ସୁନ୍ଦର ରଜତ ଶୋଭି ପ୍ରଚ୍ଛଦପୁର
ନୂତେ ଯେସ୍ନୁ ମେଘ ଖଣ୍ଡ ଶୃଙ୍ଖଳ ଗୃମର । ୧୩ ।

ନିର୍ମଳ ଗଗନ ନୃପ ବିଜୟ ଭୁବନେ
ମହୋତ୍ସବ ଚନ୍ଦ୍ରା ତାହା ଦିଶଇ ଯତନେ । ୧୪ ।

ଦଳିତ ଅଞ୍ଜନ କାନ୍ତି ଧରନ୍ତି ଗଗନ
ରମଣୀୟ ଅଟେ ଯେସ୍ନେ ବ୍ରଜେନ୍ଦ୍ର ନନ୍ଦନ । ୧୫।

ବନ୍ଧୂକ କୁସୁମଚୟେ ମହୀ ଅରୁଣିତା
କୁଙ୍କୁମ ଲେପନେ ଜବା ଚୂଡରେ ଶୋଭିତା ।୧୬।

ପକ୍ବପକ୍ବ ଧାନ୍ୟ କ୍ଷେତ୍ରେ ଯେଣୁଟେ ଆବୃତା
ପିନ୍ଧିଛନ୍ତି ପୀତାମ୍ବର ହୋଇ ବସାବୃତା । ୧୭ ।

କଦମ୍ବ କେତକୀ ମଧୁର ଦିଶଇ କାନନେ
ରମ୍ୟ ଶାଖାଗ୍ର କମ୍ପିତ ମନ୍ଦ ସମୀରଣେ । ୧୮ ।

ବାଳ ପଲ୍ଲବ ଶୋଭଇ ପୁଷ୍ପ ଗୁଚ୍ଛ ତଳେ;
ମଧୁପେ ବିତରେ ମଧୁଧାରା ଅବହେଳେ । ୧୯ ।

ବାଳା ପ୍ରମଦା ପରିଯେ ସୁଗୃତ୍ର ରଜନୀ
ଶୋଭେ ନକ୍ଷତ୍ର ଆବଳି ସୁଯତନେ ଯେଣ । ୨୦ ।

ନୀରଦ ଓଢ଼ଣି ମୁକ୍ତ ଶଶାଙ୍କ-ବଦନ
ପିନ୍ଧନ୍ତି ଚନ୍ଦ୍ରିକାମୟ ସୁନ୍ଦର ବସନ । ୨୧ ।
କୃଶ ସ୍ରୋତସ୍ୱତୀ ହରେ ଦର୍ଶକ ମାନସ
କାର୍ତ୍ତିକ ମୁଖେ ଭଗ୍ନ ଯାଚୀ ସରସ । ୨୨
ତୀର କାଦମ୍ବ ସାରସେ ହୁଏ ଅଳଙ୍କୃତ
କହେ ହଂସ ସ୍ୱରଛଳେ ତାହାର ଚରିତ । ୨୩ ।
ଅସମ୍ପୂର୍ଣ୍ଣ ବନତା ଶାଳିକ ଦେଖାଇ
ରସିକଜନ ମାନସ ଦିଅଇ ମଜାଇ । ୨୪ ।
ନବୀନ ଉତ୍ପଳ କରମାଳା ମନୋହର
କରଷେ ଅମୃତ କଣ ପୂର୍ଣ୍ଣ ସୁଧାକର । ୨୫ ।
ବିଯୋଗ ଗରଳ ଲିପ୍ତ ଶରେ କରକ୍ଷତ
ରହେ ତରହଣୀକୁଳ ହୋଇ କୋପାନ୍ୱିତ । ୨୬ ।
ଅଧୀରଇ ଯୁବମନ ଧୀର ସମୀରଣ
ଫଳଭରନତଶାଳୀ ଶିଖା କମ୍ପାଇଣ । ୨୭ ।
କୁସୁମ ନମ୍ର ପାଦପେ ଦିଏ ଦୋହଲାଇ
ବିକଚ ପଙ୍କଜ ମୁଖୀ ପଦ୍ମିନୀ ନଗୃଇ । ୨୮ ।
ଶଠଜନ ଅଚରଣ ସିନା ଏ ପ୍ରକାର
ନୁହେ ନୁହେ ଧୀର ସତେ ଏମନ୍ଦ ସମୀର । ୨୯ ।
ପ୍ରାଭୃତକ ବାତେ ଜାତ ଚୂର୍ଣ୍ଣ ବୀଚିମାଳା
ଉନ୍ମତ୍ତ ହଂସ ମିଥୁନ ରମ୍ୟେ ପରିମଳା । ୩୦ ।

ଢଭୂଦ୍ଧିତା ଯେଣୁ ସଦା କମଳ ଉତ୍ପଳ
କାଦା ମାନସ ନନ୍ଦନର ପୁଷ୍କରିଣୀ ବଳେ । ୩୧ ।

ଇନ୍ଦ୍ର ଧନୁ ଉଠାଇଲା ମମତା ଅନଙ୍ଗ
ତେଜ ଚତ୍ରୁ ସୌଦାମିନୀ-ବୈଜୟନ୍ତୀ ରଙ୍ଗ ।୩୨

ବକକଣ୍ଠ ମାଳା ଅଉ ନମଣ୍ଡିଲା ନରେ
ମୟୂର ନର୍ତ୍ତନ୍ତି ଶିଖୀ ଛଡ଼ାଇଣ ଜବେ । ୩୩ ।

ହଂସ ମଧୁର ସଙ୍ଗୀତ ତାନେ ଦେଲା ଛାନ
ମୋହ ହେଲେ ତାହା ଶୁଣି ନରନାରୀ ଗଣ । ୩୪।

କଦମ୍ବ ସର୍ଜ୍ଜ ଅର୍ଜ୍ଜୁନ ସଙ୍ଗସ୍ତ୍ରକୁ ନେଇ
ପ୍ରକାଶ କଲା ପ୍ରମୋଦ ସମ୍ପ୍ରଛଦେ ଦେଇ । ୩୫ ।

ଶେଫାଳିକା ପରିମଳେ ଏବେ ଉପବନ
ମାଧୁର୍ଯ୍ୟ ବଢ଼ିଲା ଯାହା ନୁହେଁତା କଥନ । ୩୬ ।

ମତ୍ତ ଶକୁନ୍ତ ନିବହ ଢାଳି ଗୀତାମୃତ
ମନ୍ମଥ ବଜାର ଯୋଗ୍ୟବଲେ ତା'ର ଭ୍ରାନ୍ତ ।୩୭।

ହରିଣୀଗଣ ନୟନ ତହୁଁ ନୀଳୋତ୍ପଳ-
ସୁଷମା ବସ୍ତାର ମୋହକଲା ନାରୀକୁଳ । ୩୮ ।

ପଦ୍ମରାଗ ଶିଖା ଧାରୀ ନବକିଶଳୟ
ତହୁଁ ଶୋଭେ ମୁକ୍ତାପରି ହିମବିନ୍ଦୁ ଚୟ । ୩୯ ।

ପ୍ରଭୃତବାତ ଶୈତ୍ୟଇ ସେଣିଖି ନକର
ବଢାଇଲା ରଜଶ୍ରାନ୍ତ-ସୁଖକୁ ଅପାର । ୪୦

କେଦାରେ ଶାଳି ସମ୍ପଦ ବିସ୍ତାରିଲା ନେଇଁ,
ଗ୍ରାମ ପ୍ରାନ୍ତରେ ଗୋଧନ ମୋଦେ ସଞ୍ଚାରଇ । ୪୧ ।

ରମ୍ୟ ପଲ୍ଲୀ ପ୍ରାନ୍ତ ଶୋଭି ଜଳାଶୟ କୂଳ,
ହଂସ ସାରସ ସଙ୍ଗୀତେ ରହିଲା ଚହଲ । ୪୨ ।

ହେଲେ ପ୍ରବୁଦ୍ଧ ସେଗୀତ ତାନେ ବଧୂଗଣ,
କନ୍ଦର୍ପ କେଳିରେ ଶ୍ରାନ୍ତ ରମ୍ୟ ଅପଘନ । ୪୩ ।

ଇତସ୍ତତ ବେଶଭୂଷା ବଶେ ଲଜ୍ଜାପାଇ,
ଚଳିଲେ ସେ ଜଳାଶୟେ ବେଗେ ସ୍ନାନ ପାଇଁ ।୪୪।

ତହିଁ ଦେଖିଲେ ସୁନ୍ଦରୀଗଣ କଉତୁକେ,
ରମ୍ୟ ଶୋଭିଥିବ ଜଳା-ଶୟ ଅଙ୍କ ମୁକୁରେ । ୪୫ ।

ନିଜଛବି ଅନୁବୃତ୍ତି କରେ ହଂସ ଚୟେ,
ମୁଖଚନ୍ଦ୍ର କାନ୍ତି ଜିଣି ଫୁଲ୍ଲ ସରୋରୁହେ । ୪୬ ।

ସୁମଧୁର ବିଲୋକନ ପଶ୍ଚ ନୀଳୋତ୍ପଳ,
କ୍ଷୀଣତରଙ୍ଗ ମାଳାକି କଟାକ୍ଷ ତାହାର । ୪୭ ।

ରମ୍ୟ ତୀରେ ପଲ୍ଲବିତା ଶ୍ୟାମାଲତା ଗଣ,
କୁସୁମ ସମ୍ପଦେ ଧରିଛନ୍ତି ବିଭୂଷଣ । ୪୮ ।

ଅଶୋକ ବୃକ୍ଷ ଅଧର ଅତି ମନୋହର
ମାଲତୀ - ହାସ ଚନ୍ଦ୍ରିକା ଫୁଟଇ ନିରନ୍ତର । ୪୯ ।

ସମାଗଣ ଜଳାଶୟ ଅପୂର୍ବ ମାଧୁରୀ
ଅବଲୋକି ଅଭ୍ୟନ୍ତରେ ସୁଖେ ଗଲେ ପୂରି । ୫୦ ।

କୁଞ୍ଚିତ କୁଟିଳ ଘନନୀଳ ସୁକୁନ୍ତଳ -
ପାଶରେ ମଣ୍ଡିଲେ ରମା ମାଳତୀର ମାଳ । ୫୧ ।

ଇନ୍ଦ୍ରନୀଳମଣି ପାଶେ ଶୋଭେ କି ଅମୃତ
ନୀଳ ବସ୍ତ୍ର ପଦେ କିବା ଶଶାଙ୍କ ଉଦିତ । ୫୨ ।

ହୀରକ ମାଣିକ୍ୟମୟ କୁଣ୍ଡଳେ ମଣ୍ଡିତ
ବାମା କର୍ଣ୍ଣେ ନୀଳୋତ୍ପଳ ଦଶଇ ଶୋଭିତ । ୫୩।

ବଜ୍ର ପାବକ ସାତ୍ତ୍ୱିକ ଅନବଦ୍ୟ ପାଣ
ପଞ୍ଚଗାତ୍ର ଧବଳିକ ରମଣୀ-ନରେଶ । ୫୪ ।

ଚନ୍ଦନ ରସେ ଚର୍ଚ୍ଚିତ ହାର ସୁରୁଚିର
ରାମାବକ୍ଷ ହିମାଳୟେ କିବା ଗଙ୍ଗାଧାର । ୫୫ ।

ମଧୁର କାଞ୍ଚୀ କଳାପ କଟେ ମୋହନୀୟ
ବାମା-କାମରୂପେ ଯୋଗହୋଇ ହରେ ନେତ୍ର ।୫୬

ମଧୁର ନାଦୀ ନୂପୁରେ ସୁଗୁରୁ ଚରଣ
ବିରହି ମାରଣ ଯନ୍ତ୍ର ହୃଏକ ଶୋଭନ । ୫୭ ।

ବିକସିତ କୁମୁଦିନୀ ଦଳରେ ଅଭଥି-
ହୋଇ ଶୋଭନ୍ତ ରୁଚିର ରାଜହଂସ ସାଥି । ୫୮ ।

ଧଦନ୍ତ ନର୍ମ୍ମଳନୀର ମରକତ ପ୍ରଭା
ବିମଳ ରଜନୀ ବ୍ୟୋମସ୍ଥାୟୀ ଲଭେ ଶୋଭା । ୫୯ ।

ଶଶାଙ୍କ ନକ୍ଷତ୍ର ମାଳେ ରମ୍ୟ ଜଳାଶୟ
କାହିଁ ଗଗନ ବିଭ୍ରମ ଜନ୍ମାଏ ନିଶ୍ଚୟ । ୬୦ ।

କୁମୁଦ ସଂସର୍ଗି ବାୟୁ ବହଇ ଶୀତଳ
ନିର୍ମଳ ବିସ୍ତୃତ ତଳ ନାହିଁ ମେଘ ମାଳ । ୬୧ ।

ସକଳ ଦିଶ ବିଦିଶ ନୀରଜ ନିର୍ମଳ
ଧରନ୍ତି ସ୍ୱଚ୍ଛତାଜଳ ଲୁହଇ ପଙ୍କିଲ । ୬୨ ।

ନାହିଁ କର୍ଦ୍ଦମ ଅଯତନେ ସୁନ୍ଦର ଧରଣୀ
ଆହ୍ଲାଦକର ଜୋତ୍ସ୍ନା ମଧୁର ଯାମିନୀ । ୬୩ ।

ନକ୍ଷତ୍ର ରାଜି ଛଟରେ ବିମଳ କିରଣେ
ସୁଧାକରର ସୁଷମା କସରେ କଥନେ । ୬୪ ।

ଦିବାମଣି କରେ ପ୍ରାତେ ହୁଏ ପ୍ରତିବୁଦ୍ଧ
ଫୁଟେ ପଦ୍ମ ବରାଙ୍ଗନା ମୁକ୍ତ ପ୍ରତି ଯୋଧ । ୬୫ ।

କୁମୁଦ ବାନ୍ଧବ ଅସ୍ତ ଦେଖି କୁମୁଦିନୀ
ଧରଣ ମ୍ଲାନତ୍ୱବ କନ୍ତୁକାଲ ଭୁନ । ୬୬ ।

ବିପଦ ସମୟେ ଧୀର ଭାବାବଲମ୍ବନ
ବୋଲି ଏ ଜଗତେ ଯିନା ସାଧୁଜନ ଗୁଣ । ୬୭ ।

ପଥିକର ଭ୍ରମ କଥା ନହୁଏ କଥନ
ନୀଳୋତ୍ପଳ ଦେଖି କହେ ଏ ପ୍ରିୟା ନୟନ । ୬୮

ଶୁଣି ହଂସ ରବ ଭ୍ରମେ ପ୍ରିୟା କାଞ୍ଚୀ ସ୍ୱନେ
ବନ୍ଧୁକ କୁସୁମେ ରମାଧର କରେ ମନେ । ୬୯ ।

ଅନଙ୍ଗ ଭୂତ ଆବେଶେ ଯୁବକ ମାନସ
କେଉଁ ଭ୍ରମେ ନଭ୍ରମଇ ହୋଇଣ ସରସ । ୭୦ ।

ସୁଧାମୟୂଖ ମଧୁର ସୀମନ୍ତିନୀ ମୁଖ
ହଂସରବ ନଂ ରତ୍ନ ନୂପୁର ସୁମୁଖ ।୭୧।

ବନ୍ଧୁଲି ସୁଷମ ବଧୂ ଅଧର ପ୍ରବାଳ
କାନ୍ଧିଁ ଗୃଳିଯାଏ ଶିଖୀ ଶାରଦୀ ମଞ୍ଜୁଳ ।୭୨।

ଜଗତର ସବୁ କଥା କାଳର ଅଧୀନ
ସୁନ୍ଦରସୁନ୍ଦର ଭାବ କାଳ ହାତେ ଜାଣ ।୭୩।

ବିକସିତ ଅରବିନ୍ଦ ସୁନ୍ଦର ଆନନ
ବିକସ୍ୱର ଇନ୍ଦୀବର ଦୃଷ୍ଟିର ନନ୍ଦନ ।୭୪।

ପ୍ରସ୍ଫୁଟିତ ନବକାଶ ଧବଳ ଅମ୍ବର
ନବ କଇରବ ସମ ମଧୁର ଶର୍ବରୀ ।୭୫।

ମନ୍ଦୋନ୍ମତ୍ତ ଛନ୍ଦେ ଯାର ମଞ୍ଜୁଳ ସୁଷମା
ଆସଇ ଅବନୀତଳେ ସେ ଶାରଦ ରମା ।୭୬।



## ହେମନ୍ତ

ରାଗ-ଭୂପାଳ ।

ତୁଷାର ସମୟ ନୃପତି ବିଜୟ
ସମାରୋହ ଦେଖି ଶରତ – ନାରୀ
କୁଳାଙ୍ଗନା ବ୍ରତ ହୋଇବ ଖଣ୍ଡିତ
ଏଥିଥିଲେ ବୋଲି ଗଲା ବାହାରି । ୧ ।

ଇନ୍ଦ୍ର ନୀଳମଣି ସୁଷମାକୁ ଜିଣି
ଶୋଭିବନ୍ତ ଧନ୍ୟ ଶୁକ ସନ୍ତତି
ପଦ୍ମରାଗ ମୟ ଚଞ୍ଚୁ, ତାହାଙ୍କର
କାହିଁ ଶୋଣପକ୍ଷେ ଦୀପିତ ଅଛି । ୨ ।

ଧରଣ ଚରଣେ ପରି ତୁଷ୍ଟ ମନେ
ପରିପକ୍ୱ ଶାଳୀ ଗୁଚ୍ଛ ଯତନେ
ଉଡ଼ି ଧାଡ଼ି ଧାଡ଼ି ଗଗନକୁ ମାଡ଼ି
ବ୍ୟୋମ ମଣ୍ଡୁଛନ୍ତି କିଂଶୁକ ବନେ । ୩ ।

ହେମନ୍ତ ବିଜୟ ସଙ୍ଗୀତ ନିର୍ଝରେ
ମାନସେ ଗାଅନ୍ତି ମଧୁର ସ୍ୱରେ
କାହିଁ ବୃକ୍ଷପରେ ଶୁକୀ ସଙ୍ଗତରେ
ପ୍ରେମାଲାପେ ମାତି ଅଛନ୍ତି ଖରେ । ୪ ।

ଗର୍ଭାଳସା ଶୁକ - ବନିତା ବିମୁଖ
ପତି ସହବାସ-ଜମନ୍ତ୍ରେ କାହିଁ
ଶିଶୁଙ୍କ ପୋଷଣ ପାଇଁ ବ୍ୟଗ୍ରମନ
କାହିଁ ଶୁକଯୁଗ୍ମ ଅଛନ୍ତି ରହି । ୫ ।

ହୋଇଲାଣି ଶୁଷ୍କ		କେଦାରର ପଙ୍କ
ହେଲା ପର ପକ୍ୱ ଧାନ ସକଳ
ହେଲା ଶୁଷ୍କ ଟଛ		ପୀଡମାରେ ସ୍ୱଚ୍ଛ
ଦଶଇ ମଧୁର ଧରା ମଣ୍ଡଳ । ୬ ।

ନବୀନ ପ୍ରବାଳ		ଉଦୟେ ମଞ୍ଜୁଳ
ଦଶେ ଶସ୍ୟ ରାଶି ସୁମନୋହର
ହେମସୂକ୍ଷ୍ମ ବିନ୍ଦୁ		ହେଲେ ଶିଶୁ ଇନ୍ଦୁ
ଶ୍ଯାମ ପ୍ରାନ୍ତେ ଦଶେ ଅତି ମଧୁର । ୭ ।

ଫୁଟିଅଛୁ ବନେ		ଧୂସର ବଦନେ
ଗୁମ୍ଫା ଗୁମ୍ଫା ହୋଇ ଲୋଧ୍ର ପ୍ରସୂନେ
କପୋଟ କପୋତ		ଅନାହତ ଶବ୍ଦ
କରୁଛନ୍ତି କେତେ ପ୍ରେମ ଭାଷଣେ । ୮ ।

ରଜନୀତୁଷାର		ବରଷି ଅପାର
ନଖିଲ ଜୀବଙ୍କୁ ଦେଲା କଷଣ
ସ୍ୱଭାବେ ମଳନ		ଯା'ଅନ୍ତଃସ୍ଥ ରଣ
ପରଉପକାରେ କାହିଁ ତା'ମନ । ୯ ।

ପ୍ରମୋଦିତ ମନେ		ପଙ୍କଜ କାନନେ
ରହିଥିଲା ସୁଖେ ପଦ୍ମିନୀ ଜାତି
ହେମନ୍ତ ତୁହିନ		ଗରଳ ବର୍ଷଣ
କରି ଦୂରକଲା ତାହାର ସ୍ଥିତି । ୧୦ ।

ବହୁଳ ଦୁର୍ଜନ    ମଧ୍ୟେ କି ସଜ୍ଜନ
ବଞ୍ଚିରହୁପାରେ ବହୁତ କାଳ
ମାଡିଲେ କଣ୍ଟକ    ଉପବନ ବୃକ୍ଷ-
ଶୋଭିକ ନୁହଇ ଚିର ସକଳ । ୧୧ ।

ରମ୍ୟ ହ୍ମବନ୍ଧୁ    ଫୁଟେ କୁନ୍ଦ ଇନ୍ଦୁ-
ଷଦ୍ଗୁଣ ସୁନ୍ଦର-ମୁକ୍ତାହାର
କୁଙ୍କୁମ ରଞ୍ଜିତ    ହୋଇ ରୂପବନ୍ତ
ଭିବେ ଦରଶକ ସୁମନୋହର । ୧୨ ।

ବିଳାସିନୀଗଣ    ଘନ ପୀନସ୍ତନ-
ମଣ୍ଡଳରେ ରହି ହେଲା ଶୋଭିତ
ବିସ୍ତାରିଲା ଆଭା    ଜନମନଲୋଭା
ସ୍ତନ ମଣ୍ଡଳର, ସୁଗୁଣବନ୍ତ । ୧୩ ।

ପୂର୍ବପୁଣ୍ୟ ବଳେ    ଜନମିଲେ କୁଳେ
ସୁଗୁଣ ସମ୍ପନ୍ନ ଯାର ନନ୍ଦନ
କୁଳ ଶୋଭାକର    ହୁଏ ସେ କୁମାର
ତାଯୋଗୁଁ ନନ୍ଦନ ଶୋଭଇ ପୁଣ । ୧୪ ।

ବିଳାସିନୀ ଗଣେ    ଅଙ୍ଗଦ କଙ୍କଣେ
ନଭୂଷିଲେ ଆଉ ଭୁଜ-ବଳୟ
ନିତମ୍ବବିମ୍ବରେ    ପୀନପୟୋଧରେ
ନମଣ୍ଡିଲେ ସୂକ୍ଷ୍ମ ବାସ ଆଦରେ । ୧୫ ।

କନକ ରତନ-　　　　　ଚନ୍ଦ୍ର କାନ୍ତିଗୁଣ
ନହେଲା ପ୍ରମଦା କଟି ଭୂଷଣ
ମରାଳିନୀ ସ୍ୱନ -　　　　　ନୂପୁର ତକ୍ଷଣ
ଦୂଷ୍କୃତ ପଦ-ପଙ୍କଜ ଯେଣ । ୧୬ ।

ନମୃଛର ବଚଳ　　　　　ଅବସ୍ଥା ବଦଳେ
ଚରାଚର ବଣ୍ଯ ଜୀବ ରାଶିର
ହୁଅଇ ଅମୃତ　　　　　ଗରଳ ନମୃତ
କେ ହୁଏ କାହିଁ ଅମୃତା ଧାର । ୧୭ ।

କାଳୀୟ କରଷ　　　　　ଲେପନ ସରସ
ହେଲା ଶ୍ୟମା ରତ୍ନ ରମ୍ୟ ଶରୀର
ଚନ୍ଦ୍ରପତ୍ର ଲେଖ　　　　　ମୟୂଖେ ଶ୍ରୀମୁଖ-
ଶତ ପତ୍ରହେଲା ଅତି ସୁନ୍ଦର । ୧୮ ।

ଦ୍ରବ୍ୟ କାଳାଗୁରୁ　　　　　ଧୂପଧୂମେ ଗୁରୁ
ହେଲା ସୁରଞ୍ଜନ କେଶକଳାପ
କାମ ମହୋଷଧ　　　　　ହୃଦେ କଲା ଠାବ
କଲେ ପଞ୍ଚ ସେବା ଦେବ କଳପ । ୧୯ ।

ରସାଳ ସରମା　　　　　ମଣ୍ଡିତାକେରମା
ମାଛ ସଖୀ ସହ୍ନ ପରହାସରେ
ତୁଷାର ସଙ୍ଗତ -　　　　　ଅଧର ପୀଡ଼ିତ
ହେତୁ ନ ହସିଲା ଅତି ଉଛରେ । ୨୦ ।

ଉନ୍ନତ ଉରସ                ବଢଜ ସରସ
କାମିନୀ କାମୁକଙ୍କର ମିଳନ,
ଅଦ୍ଭୁତ ସୁଯୋଗ-                ଉତ୍ସବ ପ୍ରସଙ୍ଗ-
ପାଇ ପ୍ରପୀଡ଼ିତ ହେଲ ହେମନ । ୨୧ ।

ରଜନୀ ପତିତ                ତୃଣାଗ୍ର ସଞ୍ଚିତ
ତୁଷାର ଶୀକର ଛଳେକ ଏବେ,
ନୟନୁ ସଲିଳ                ବୁହାଇ ବିକଳ-
ହୋଇଣ ଖେଦର ଖର୍ବିତ ଗର୍ବେ । ୨୨ ।

ପକ୍ୱ ଧାନ୍ୟ ଭରେ                ସୁନ୍ଦର କେଦାରେ
ବିଚରଣ ସୁଖେ ହରିଣ ଗଣ,
ମାଛତା ଭୋଜନେ                ଚଞ୍ଚଳ ନୟନେ
କରନ୍ତି ଚୌଦିଗେ ଅବଲୋକନ । ୨୩ ।

ହିଡ଼ପରେ ବକେ                ବସିଛନ୍ତି ସୁଖେ
ରଖିଛନ୍ତି ମୀନେ କୋନ୍ତ ଧ୍ୟାନ,
କାହିଁ ମାଟଲାଗୁଳେ                କେଦାର ସଲିଳେ
ବିକଶି ସୌରଭେ ହରନ୍ତି ମନ । ୨୪ ।

ହେମନ୍ତ ପବନେ                ସଦା ବିକମ୍ପନେ
ପ୍ରିୟଙ୍ଗୁ ଧରନ୍ତି ପାଣ୍ଡୁର କାନ୍ତି,
ପ୍ରିୟ ବିରହିଣୀ                କୁଳ ବିଳାସିନୀ-
ପ୍ରାୟ ଦେଖାଯାଏ ତେଣୁ ସେମାନ୍ତି । ୨୫ ।

ନବ ପୁଷ୍ପାସବ- ପାନୁ ସତ୍ତରଭ-
ମୂର୍ଚ୍ଛେ ମୁଖ ଭବ ଘୂର୍ଣ୍ଣିତନାଶା,
ଅନ୍ୟୋନ୍ୟ ଉଚ୍ଛ୍ୱାସ ଚନ୍ଦନାଦ୍ୟେ ବାସ
ଶୋଇଛନ୍ତି ବର୍ଣ୍ଣି ଅଙ୍ଗ ମାଧୁର୍ଯ୍ୟ । ୨୬ ।

ରମଣୀ ଅଧର ଦଶଇ ସୁନ୍ଦର
ଦନ୍ତକ୍ଷତ ବ୍ରଣେ ହୋଇ ଚର୍ଚ୍ଚିତ,
ଉନ୍ନତ ଉରଧ ଶୋଭେ କେସରସ
ନଖକ୍ଷତ-ଅର୍ଦ୍ଧ ଚନ୍ଦ୍ରେ ଅଙ୍କିତ । ୨୭ ।

ଦରପଣ ଧରି କେବଣ ସୁନ୍ଦରୀ
ବାଳାତପେ ବସି ଭୂଷେ ବଦନ,
ରମ୍ୟ ଅଧରର କ୍ଷତ ବାରମ୍ବାର
ଦେଖି ସୁଲକ୍ଷେ ଲଜ୍ଜାପଘନ । ୨୮ ।

ଅନ୍ୟ ସୀମନ୍ତିନୀ ଲଜ୍ଜାପଣ୍ଡ ହେନ
ମାଡିଯାଇଥିଲେ ବହାର ସୁଖେ,
ଯେଣୁ ଅନଦ୍ରତା ନେନ୍ଦ୍ରେ ପାଟଳତା
ସଜାଥିଲା ତାର ଘୂର୍ଣ୍ଣି ପଲକେ । ୨୯ ।

ବାଳାତପେ ବସି ଯାଅନ୍ତେ ସୁକେଶୀ
ସର୍ବ ଶ୍ରମ ଭରେ ନିଦ୍ରା ଅବଶା,
କୁନ୍ତଳ ବନ୍ଧନେ ତର ନାହିଁ କ୍ଷଣେ
ଅଂସ ବଲମ୍ବିତ କୁଞ୍ଚିତ କେଶା । ୩୦ ।

ପୀନ ପୟୋଧର  ଆନତ ଶରୀର
କେବଳ କାମିନୀ ସରସ ମନେ,
ସଉରଭ କଳା  ହୀନ ପୁଷ୍ପ ମାଳା
ବାସିବର୍ଣ୍ଣୁ କେଶୁ ତେଜି ତକ୍ଷଣେ । ୩୧ ।

ନବଘନ ନୀଳ  ସୁନ୍ଦର କୁନ୍ତଳ
କଙ୍କତିକା କରେ ସାଜି ସୁନ୍ଦରୀ,
ସୁବାସ ପ୍ରସୂନ  ମାପ ଲଗାଇଣ
ମୁକୁରେ ଦେଖଇ ନିଜ ମାଧୁରୀ । ୩୨ ।

କେଉଁ ପ୍ରେମଶୀଳା  ଅଧର ମଣ୍ଡିଲା
ରମଣୀୟ ବାସ ଅଳତା ରସେ,
ସୁନୀଳ ନଚୋଳ  ପିନ୍ଧୁ ସ୍ତନତଳ
ଦେଖି ନଖାଙ୍କିତ ପ୍ରଫୁଲ୍ଲ ରସେ । ୩୩ ।

ଲମ୍ବମାନନୀଳ  ଖଣ୍ଡିତ କୁନ୍ତଳ
ଯେଣୁ ପଡ଼ିଅଛି ପଲଙ୍କପରେ,
କରେ ଅଙ୍କୁଞ୍ଚନ  ସୁଘାଙ୍ଗ ନୟନ-
ଇନ୍ଦୀବର ଦଳ ସେ ଥରେ ଥରେ । ୩୪ ।

ଆଉଟକ ରମଣୀ  କ୍ରୀଡ଼ା ଶ୍ରମ ଯୋଗ
ହୋଇଥିଲା ଖିନ୍ନ ଅଙ୍କଶଯ୍ୟରେ,
ସର୍ବ ସନ୍ଦନନ  ଶିଥିଳ ବନ୍ଧନ
ତା' ଆଲସ୍ୟ କହ୍ନୁଟେ ବାକ୍ୟରେ । ୩୫ ।

ସଞ୍ଜାତ ପୁଲକ          କଣ୍ଠେ ଗୃନ୍ଥୁ ବକ୍ଷ
ହୋରଣ ସୁନ୍ଦରୀ କର ନଳିନେ,
ସୁବାସିତ ତୈଳ          ଲେପେ ଅଙ୍ଗବେଳ
ହରଷ ମାନସେ ସଙ୍ଗାପଘନେ । ୩୬ ।

ମନୋହରମୟ          ଶ୍ୟାମ ଦୁର୍ବାଚୟ
ନବକିଶଳୟ ହିମବିନ୍ଦୁରେ,
ଶୋଭାପାଏ ପୁଣି          ବସୁନ୍ଧରା ଘଣୀ
ନୀଳମଣି ମୁକ୍ତା ମାଣିକ୍ୟହାରେ । ୩୭ ।

ସୁଗୁଣ ନକର          ଧରୁ ମନୋହର
ଅବଳା ମାନସ ନଅଇଁ କିଣି,
କ୍ରୌଞ୍ଚମାଳାଧର          ସୁନ୍ଦର କେଦାର
"ହେମନ୍ତସମୟ" ଆସେ ଧରଣୀ । ୩୮ ।



# ଶିଶିର

### ରାଗ-ରାମକେରୀ

ଧାନ୍ୟ ଶସ୍ୟେ ଶୋଭିତ ଦିଶେ କେଦାରମାଳ,
ପିନ୍ଧିଛି ଧରଣୀ ରାଣୀ କି ପୀତ ପଟ୍ଟ ଦୁକୂଳ ? । ୧ ।

ବକବକୀ ବସି ଉଲ୍ଲାସେ କାହିଁ କରନ୍ତି ରବ,
ତେଣେ କି ପ୍ରକାଶେ ଅବନୀ ନିଜ ଆନନ୍ଦଭାବ? । ୨

ବଢ଼ିଲା ବନିତାଗଣର ପୁଂସଙ୍ଗେ ପୀରତି,
ଶୁକ୍ଳ ପକ୍ଷେ ଶଶୀ କଳାର ନାଣ୍ଡ ଥରଣ ନଣ୍ଡ । ୩ ।

ପ୍ରମଦା ପୁରୁଷ ସମାଜେ କଲା ମୃଗୟା କାମ
ହେମନ୍ତ ଅନ୍ତରେ ଶିଶିର ଆହା କି ମନୋରମ । ୪ ।

ଗବାକ୍ଷ କବାଟ ମୁଦିଲେ ଗାଢ଼େ ଯେ ଯାହାପୁରେ,
ଗନ୍ଧବହ-ବୈରୀ ପ୍ରବେଶ ଶଙ୍କା କରି ମନରେ । ୫ ।

କମ୍ବଳମାଳ କରସେବନେ ହେଲେ ସର୍ବେ ତତ୍ପର,
ଶୀତ ଉତପାତ ଗଣନା କଲାନାହିଁ ଅନ୍ତର । ୬ ।

ହସନ୍ତି ପାବକ ସମୀପେ ଶୀତେ ହସନ୍ତି କେହି,
ବଳବନ୍ତ ଦେଖି ଦୁର୍ବଳ କେବେ ରହେକି କାହିଁ ।୭ ।

ଗ୍ରୀଷ୍ମୀୟ ବସନ ଅଟ୍ଟାଳିବାସ ଯୁବକ ଜନ,
ନରତେ ପୁରୁଷଗଣର ହେଲା ସେବ୍ୟ ପ୍ରଧାନ । ୮ ।

ନବଳାଲ ଅତ୍ର ମାନସ ଲେପିବାକୁ ଚନ୍ଦନ,
ଯେସନ ଗ୍ରୀଷ୍ମ ଋତୁରେ ରକ୍ତ ବର୍ଦ୍ଧି ସେବନ । ୯ ।

ଅମୃତ କରର ଅମୃତକର ନଲାଗେ ସୁଖ,
ପଣ୍ଡିତ ସମାଜ ଦେଖିକି ତୃପ୍ତ କେବେ ମୂରୁଖ । ୧୦ ।

ତୁଷାର ଶୀତଳ ପବନ ଜନେ ମଣ୍ଡିଲେ ବିଷ
ପିଣ୍ଡବେଶୀତେଣେ ଯେମନ୍ତ ଘୃରୁ ନବାତ ରସ । ୧୧ ।

ଚନ୍ଦ୍ର ବୃନ୍ଦମାରେ ବହ୍ନାର ତେଜ ଦେଲେ ମାନସୁ,
ଭସ୍ମକୃତ ବନ୍ୟ ଅଦ୍ଭୁନ ହାସ୍ୟ ନଧ୍ୟୁଛି ବଣ୍ଡୁ । ୧୨ ।

ଶିଶିର ରଜନୀ ଜଟତେ ନୁହେ ସହ୍ୟ କାହାର,
ହିମ ଶିଳାରସୁ ଚତନ୍ତୁ ଗତ୍ରା ଅଛ ଶୀତଳ । ୧୩ ।

ଦୁର୍ଦ୍ଧାନ୍ତ କୁଟୁମ୍ବ ଜନଙ୍କ କଟୁତର ବଚନ,
କଳ୍ପରେ ସହ୍ୟ ଏମନ୍ତ ଅଛନ୍ତି କେବଣ ଜନ । ୧୪ ।

ଶଶଧର ଶୀତ କରଣେ ପଥ ଶୀତଳତମ,
ତହିଁ ସାଧୁ ସୁର କଳନର ମଧ୍ୟ ଲଭନ୍ତି ଶ୍ରମ । ୧୫ ।

ମଳିନ ନକ୍ଷତ୍ର ନକର ନୁହେ ନଭ ଭୂଷଣ,
ମୁରୁଖର ଯେଣୁ ଅହଂ ଆଡ଼ମ୍ବର ଦୂଷଣ । ୧୬ ।

ସାଜନ୍ତି ଶୟନ ଗୃହକୁ ତହିଁ ନାଗରୀ ଜନେ.
କୃଷ୍ଣାଗୁରୁ ଧୂପ ଧୂମରେ ସୁବାସିତ ଯତନେ । ୧୭ ।

ଅଷ୍ଟାଙ୍ଗ ଯୋଗିଏ ଦେଖିଲେ କଷ୍ଟପାରନ୍ତି ଲୋଭ,
ବଶହୋଇଯିବେ ସେବାସେ ହେଲେହେଲେହେଁ ଶିବ ।

ଚଛ ସେବାପାଇଁ ତହିଁରେ ରଖିଥାନ୍ତି ଯତନେ,
ସୁବାସିତ ପୃଷ୍ଟଚନ୍ଦନ ଅଛ ପ୍ରମୋଦ ମନେ । ୧୯ ।

ଯେଣୁ ହରହର ବିଧାତା ତହୁଁ ଅଧିକ ପୂଜ୍ୟ
ପଛ ସେ ଦେବତା ପ୍ରାଣରୁ, ନାହିଁ ଅନ୍ୟରେ କାର୍ଯ୍ୟ ।

ସୁବାସ ତାମ୍ବୂଳ ବାଟିକା ଦିବ୍ୟ ପୁଷ୍ପ ମାଳିକା,
ସମ୍ଭୋଗ ସାମଗ୍ରୀ ବିଶେଷେ ଯାଉଥିଲେ ଦେଖି ।। ୨୧ ।

ରମ୍ଭାତିଳୋତ୍ତମା ଘୃତାଚୀ ମୁଖ୍ୟ ଅପ୍ସରାଙ୍କର,
ସର୍ବ ଭୋଗ୍ୟ ବସ୍ତୁ ସମ୍ପନ୍ନ ଯଥା ଶୟନାଗାର । ୨୨ ।

ସୁଖମୟ ମଧୁ ପାନରେ ପରିମଳ ସମ୍ପନ୍ନ,
ବଦନା-ରବିନ୍ଦେ ରାଜନ୍ତି ତହିଁ ନାଗରୀ ଗଣ । ୨୩ ।

ସୁରଲୋକ ଭୋଗ ଅଦୃଷ୍ଟ ବଶବର୍ତ୍ତୀ ପୁରୁଷ-,
ବିଳସିବା ଯୋଗ୍ୟ ସୁବଣ୍ଠ ଜନ ଲଭ୍ୟ ବିଶେଷ । ୨୪ ।

ଅପରାଧ୍ୟ ପ୍ରିୟ ବାନ୍ଧବ ଦେଖାଯାନ୍ତି ପୁରତେ,
ହୋଇଲେ ତର୍ଜିତ ଭର୍ତ୍ସିତ, ଯଥା ଭୃତ୍ୟଙ୍କ ସତେ ।୨୫।

ଅଶ୍ୱତ୍ଥ ପତ୍ରର ଆକାର କମ୍ପମାନ ଶରୀର,
ବ୍ୟାଧଲକ୍ଷ୍ୟ ମୃଗ ସଦୃଶ ଲୁପ୍ତ ବିବେକ ବୀର । ୨୬ ।

ତଥାପି ମଦନ ଆବେଶେ ରତିରଙ୍ଗ ଲାଳସେ,
ପଡ଼ି ଅପରାଧ ବିସ୍ମରି ଦେଲେ ଦୁଷ୍ଟ ମାନସେ । ୧୭ ।

ଦଣ୍ଡଦାନ ବିଧିବିଧାନ କାହିଁ ରହନ୍ତା ମନେ,
ଯେଣୁ ସେ ସୁରଭି କାମୁକା, ଅନଙ୍ଗର ଅଧୀନେ । ୧୮ ।

ମାଦକ ମଦନେ ଉନ୍ମତ୍ତତମ ଯୁବକଗଣ,
ଯାବତ ସୁଦୀର୍ଘ ରଜନୀ ନିଦ୍ରାକଥା ତେଜିଣ । ୧୯ ।

ନିର୍ଦ୍ଦୟ ଭାବରେ ପ୍ରିୟାଙ୍କ ସହ ଗାଢ଼ ମିଳନ,
ତାମସୀ ଶେଷରେ ସେସୁଖ ହୋଇଯାନ୍ତି ଭଞ୍ଜନ ।୩୦।

ସମାଟେଶ ଶ୍ରମ ଭରରେ କର୍ମମାନ ଉରସେ,
ପ୍ରାତ୍ୟହିକ ଗୃହକାର୍ଯ୍ୟକୁ ନପାଷଣ ଅଳସେ । ୩୧ ।

ଧୀରେ ଧୀରେ କର ଭ୍ରମଣ କଲେ କାର୍ଯ୍ୟ ବାଲସ୍ୟେ,
ପତନ କାରଣ ନୁହେକ ଅତ୍ୟାସକ୍ତି ଅଙ୍ଗେମ୍ଭେ । ୩୨ ।

ଉଡ଼ନ୍ତ ମୃଦୁଟେ କାମ୍ବୁଲ ହରଷ୍ଟଲେ ବାମାଏ,
ଦାମୁକା କାମୁକ କଣ୍ଠକୁ ଉଡ଼ଲାର ପରାସ୍ୟେ । ୩୩ ।

ରଞ୍ଜିତ କୌଶେୟ ବସନ ସମା ପିନ୍ଧନ୍ତ ରସେ,
ନାଗର ନୟନ ଖଞ୍ଜନ ଦ୍ରୁତ ଅଠା କଟିସେ । ୩୪ ।

ରମ୍ୟ କେଶପାଶେ କୁସୁମ ମାଲ୍ୟ କଶୋଭ୍ରି ପାଏ,
ସନ୍ଧ୍ୟାର ମୁଖରେ ଶଶାଙ୍କ – ଅର୍ଦ୍ଧଭାଗ ପରାସ୍ୟେ । ୩୫ ।

ହୁଅଇ ଶିଶିର ଭୂଷଣସାର ନାଶ୍ରୀ ଜନର,
ରସଙ୍କ ପରାଣ ବାନ୍ଧିବ, ଦେବସେ ସଖୀଙ୍କର । ୩୬ ।

ଯୁବତୀଙ୍କ ଉଚ୍ଚ ଉରସ ଅହାକେତେକ ସୁନ୍ଦର,
ସଗା-ମୃଡେ ପୂର୍ଣ୍ଣି, କୁଙ୍କୁମରସେ ଲିପ୍ତ ଅନ୍ତର । ୩୭ ।

ପୀୟୂଷ ଭରିତ କନକମୟ କଟେ କଲଶ,
ନୋହିଲେ ସେହେବ କଳପ ଲତାଫଳ ସଦୃଶ । ୩୮ ।

ନବୀନ ତାରୁଣ୍ୟ ସମ୍ପଦେ ଉଷ୍ମାପୂର୍ଣ୍ଣ ଶରୀର,
କାମୁକ ଯୁବକ ଜନଙ୍କ ଚନ୍ଦ୍ରାମଣି ପ୍ରକାର । ୩୯ ।

ସେ ମୃଦୁ ଶରୀର ପରଶେ କହ ନୁହଇ ସୁଖ,
ଯେସନ ପଥିକ ଦେଖନ୍ତେ ସଖୀ ପଙ୍କଜ ମୁଖ । ୪୦ ।

ଯେବା ଅଲିଙ୍ଗନ ବାହୁଲ୍ୟ ଜାମିନୀରେ ପଣ୍ଡିତା,
ପ୍ରସନ୍ନ କଦନପାତରେ କି ସେପରାଣ ଦେବନ୍ତା । ୪୧ ।

ଏମନ୍ତ ବାଳାସବଣଙ୍କୁ ନିଜ ବକ୍ଷ ଉପରେ,
ଶୁଆଇ କାମୁକ ଶୁଅନ୍ତି ସୁଖେ ଶୀତ ନିଶାରେ । ୪୨ ।

ଉତ୍ଫୁଲ୍ଲ ବାସିତ ମଦିରା ଅଧା କି ମନୋହର,
ରସିକ ଯୁବକ ନୟନେ ବାରାଙ୍ଗନା ପ୍ରକାର । ୪୩ ।

ସୁବାସିତ ଶ୍ୱାସ ପ୍ରଶ୍ୱାସ ମୋଦେ କାମୁକ ଜନ,
ବାତ୍ସ୍ୟାୟନ ଶାସ୍ତ୍ର କଥିତ ଯଥାରୀତି ବନ୍ଧନ । ୪୪ ।

ସ୍ୱର୍ଣ୍ଣମୟ ପାନ ପାତ୍ରରେ ଭରି ଦ୍ରବ୍ୟ ଆସବ
ମୁଖାମୋଦ ନୀଳୋତ୍ପଳରେ ତା ଗନ୍ଧେ କେ କହିବ ।୪୫।

କାମୁକ କାମିନୀ ଉଭୟେ ବସି ଏକ ଆସନେ,
ମାତନ୍ତି ନିଶିର ନିଶାରେ ଏକ ପାତ୍ରରେ ପାନେ ।୪୬।

କ୍ଷଣକେ ଉନ୍ମତ୍ତ ହୋଇଣ ପରସ୍ପର ବଦନେ,
ପିଅନ୍ତି ଗଣ୍ଡୂଷ-ପୀୟୂଷ କୁତୂହଳ ସଦନେ । ୪୭ ।

ହୋଇଯାନ୍ତି କ୍ରମେ ପ୍ରସନ୍ନ ରତି ଆଉ ମଦନ,
ବେଳୁଁ ବେଳ କ୍ରୀଡ଼ା କୌତୁକରସ ହୁଏ ବର୍ଦ୍ଧନ ।୪୮।

ପଡ଼ି ସହବାସୁ ନିଶାରେ ଅନୁରାଗ ଉନ୍ମାଦ-,
ଅପଗତ ହେତୁ ସୁନ୍ଦରୀ ଯେଣୁ ଲଭନ୍ତି ଖେଦ । ୪୯ ।

ପବିତ୍ର ମଙ୍ଗଳ କାରକ ଗୁରୁକୁଳ ବାସରେ,
ଆକ୍ଷେପ ଭଜନ ଅନ୍ଧତାରହେ,ଯେସନେ ଦୂରେ । ୫୦ ।

ରମଣର ଚାରୁ ଅଙ୍ଗେ ଅଙ୍କଶଙ୍କେ ପୀଡ଼ିତ,
ଉନ୍ନତ ଉରସେ ଚନ୍ଦ୍ରକ ଶୋଭା ବୃନ୍ଦେ କଥିତ ।୫୧।
କ୍ଵାଥୀକୃତ ପଥ୍ୟ ମାଧୁର୍ଯ୍ୟ ମୁକ୍ତ ମାଧ୍ଵୀକ ବତ,
କି ଅବାଦନର. ସୁପକ୍ଵ ମାଧୁ କ୍ଷୀରିକା ସତ । ୫୨ ।
ପ୍ରିୟତମ ଭୃଙ୍ଗ ଶବାର କଏ ଶିଙ୍ଗାର ସୁମ,
ପ୍ରଲ୍ଲଟେ ଅଳଟେ ଗଳଇ ତେଜି ଶଯ୍ୟନ ଧାମ । ୫୩ ।
ଝସିଛୁ କୁସୁମ ମାଳିକା ରମ୍ୟ କୁନ୍ତଳ ପାଶୁ,
ଖସିଛୁ ସତେକି ବିଦ୍ୟୁତ ନବଜଳଦ ଦେଶୁ । ୫୪ ।
କେଶପାଶ ଫିଟିଲେଟିଲ ଗନ୍ଧ ଧୂପେ ବାସିତ,
ଶରଣ ପଶିଣ ଚିହ୍ନିଛୁ ତମ କି ମୂର୍ତ୍ତିମନ୍ତ । ୫୫ ।
ଧରିଅଛୁ ବାମ କରରେ ବାମା କୁଞ୍ଚିତ କେଶ,
ପ୍ରଦୀପ କଳିକା ଶିଖରେ ଅଞ୍ଜନର ସଦୃଶ । ୫୬ ।
ଫିଟିଅଛୁ ପିନ୍ଧାବସନ ଦଶେ ଜନତମ୍ବଲେଶ,
ଦଶେ ଜମ୍ବୁନାଉ ମଣ୍ଡଳ ଅଛି କୌତୁକ ରସ । ୫୭ ।
ଏକଚକ୍ରେ ପରିଚ୍ଛଳିତ ସେତ ଅନଙ୍ଗ ରଥ,
ତା ଚକ୍ରର ଗରେ ବସିଛୁ ରଛି ସବତା କାନ୍ତ । ୫୮ ।
ଏମନ୍ତ କେବଣ କାମିନୀ ପ୍ରାତେ ଉଠି ସତ୍ଵର,
ଲଜ୍ଜାନମ୍ର ମୁଖୀ ତେଜଇ ମଧୁଶଯ୍ୟନାଗାର । ୫୯ ।
ବସିଛନ୍ତି ଗୃହେ ବାମାଏ ଭଙ୍ଗି ଦାନ୍ତୁ ଅଳସ,
ଦିଅଇ ମାନସେ, ଭବନ ଲକ୍ଷ୍ମୀକି ଏପ୍ରକାଶ । ୬୦ ।

ସୁବାସିତ ଜଳେ ବଦନ କରୁଛନ୍ତ କ୍ଷାଳନ,
ପ୍ରପାତ ହୁଅଇ ଦେଖିଲେ ଶୃମୀକର ନଳନ । ୬୧ ।

କର୍ଣ୍ଣତଟେ ହୁଏ ଘୂର୍ଣ୍ଣିତ ରକ୍ତପ୍ରାନ୍ତ ନୟନ,
କହେ ଘର୍ଘତମ ନଶାରେ ସମା ନଦ୍ରା ବହୀନ । ୬୨ ।

ଫିଟିଣ ଲୋଟଇ ସ୍କନ୍ଧରେ ରମ୍ୟ କେଶକଳାପ,
ଭାବେ କ ବର୍ନିରେ ସମାର ମାର କେଳ ଅମାପ । ୬୩ ।

ନଶ୍ବାସ ପୂରତ ଶ୍ରମରେ ପୃଥୁନତମ୍ବ ଭାର,
ଉନ୍ନତ ଉରସ ପୀଡ଼ିତ, କଟି ଅନତ ତର । ୬୪ ।

କୁବେରଜ ଲୁକ୍ଳା ବଶିଷ୍ଟ ରମ୍ଭାପର ସୁନ୍ଦର,
ବଶ୍ୱାମିତ୍ର ଭୋଗ୍ୟା ମେନକା ବଡ ଦଶେ ତୁଚ୍ଛର । ୬୫ ।

ସୁମନ୍ଥର ଗତ ପ୍ରକାଶେ ରମଣୀର ଅଲସ୍ୟ,
ଶୋଭଇ ବେର୍ଣୀ ମରାଳ ସୁନ୍ଦରୀର ସଦୃଶ । ୬୬ ।

ରୁଚର କୁସୁମ ସୁରବେଶ ହୋଇଯାଇ ନରସ୍ତ,
ଲଜ୍ଜାଭରେ ପର୍ଣ୍ଣ କରନ୍ତ ଯେଣୁ ଅଙ୍ଗନା ଚତ୍ତ । ୬୭ ।

ତରତରେ ସେହ ବେଶକୁ ତେଜ କାମିନୀବର,
ସରଳ ବଶୁଦ୍ଧ ନେପଥ୍ୟ ସାଜୁଅଛନ୍ତ ଶରୀର । ୬୮ ।

କାମୁକ କରନ୍ତେ ଚର୍ଚ୍ଚିତ ବକ୍ଷୋରୁହ ମଧୁର,
ଅର୍ଙ୍କିତ ଗିସିଶ ଲଙ୍ଗରେ କଳା କବାଇନ୍ଦୁର । ୬୯ ।

ଥରେ ଥରେ କର ଦର୍ଶନ ଲୁଗୃଉଛନ୍ତ ବସନେ,
ସଜନୀର ପ୍ରଶ୍ନେ କହବେ କସ ଭବଇ ମନେ । ୭୦ ।

ଅଳ୍ପରେ କାମୁକ ଚୁମ୍ବନ କଲେ ହୋଇ ଖଣ୍ଡିତ,
ସୁନ୍ଦରୀ ଅଧର-ପଲ୍ଲବ ଆହାକେଡ଼େ ଶୋଭିତ । ୭୧ ।

ଶୁକଭରେ ପକ୍ୱବିମ୍ବକ ଦଂଶ କ୍ଷତ ବିକ୍ଷତ,
ପ୍ରବାଳ କି ରମ୍ୟ ଆଘାତେ ହୋଇଅଛି ଛିନ୍ନ । ୭୨ ।

ତୁଷାର ଶୀତଳ କରରେ ସେହି କ୍ଷତ ପରଶି,
ଲୁଗୃଉନ୍ତି ପରିଦ୍ଧୁଙ୍କିରୁ ଲଜ୍ଜାଭରେ ସୁହାସୀ । ୭୩ ।

ନିଶାର ସମ୍ଭୋଗ ସମ୍ପଦ ବାରମ୍ବାର ସ୍ମରଣ-,
କରଣ ନବୀନା ଯୁବତି ହୁଏ ପ୍ରମୋଦ ମନ । ୭୪ ।

କ୍ରୀଡ଼ାଭରେ ବ୍ୟସ୍ତ ସିନ୍ଦୂର ବିନ୍ଦୁ ଅଞ୍ଜନ ଗାର,
ପୋଛୁଣ ପ୍ରଭାତେ ବଦନ ମଣ୍ଡେ ରମଣୀ ବର । ୭୫ ।

ଯେବେ ଜନମଇଁ କନ୍ଦର୍ପ, ରତିକେଳି ପ୍ରବଳ,
ଯେବେ ମିଳେ ଖଣ୍ଡ, ସୁସ୍ୱାଦ ଗୁଡ଼, ଆଖୁ, ଶାକର ।୭୬।

ସଂଯୋଗି ଜନର ଅପାର ମୋଦଭର ଦାୟକ,
ବିଯୋଗି ଜନର ବହୁଳତର ତାପ କାରକ । ୭୭ ।

ଧନକ ଅନନ୍ଦ ବର୍ଦ୍ଧକ ଦୀନ ସନ୍ତାପ କର,
ଜଗତେ ଏମନ୍ତେ ଅସିଣ ଦେଖାଦେଏ ଶିଶିର । ୭୮ ।



## ଷଡ୍ଋତୁ

### ରାଗ-ବସନ୍ତ ।

ରମ୍ୟ ମଳୟ ମାରୁତ  କୋକିଳ ପଞ୍ଚମ ଗୀତ
ପୁଷ୍ପିତ ମଲ୍ଲୀ ଅଶୋକ ଚମ୍ପକେ ବାସ,
ଠନ୍ରାସ୍ୱ ସୁଧାକର  ବିଶ୍ୱକେ ପ୍ରସାଦ କର
ସେବେ 'ବସନ୍ତ' ଈଶ୍ୱର- ପାଦ-ସାରସ ।୧।

ପ୍ରଖର କର ତରଣୀ  ତପତ ଧରା ସରଣୀ
ଗଗନ ଧୂଳି ଧୂସର ସୁନ୍ଦର ସଞ୍ଜ,
ଜନେ ସେବ୍ୟ ନିଶାମଣି  ଚନ୍ଦ୍ରିକା ଗୃନ୍ଦନୀ ସେବ
ସେବେ 'ଗ୍ରୀଷ୍ମେ' ଈଶ୍ୱର- ଚରଣ-କଞ୍ଜ ।୨।

ଅଞ୍ଜନାଭ ଅମ୍ବୋଧର  ବରଷି ସଲିଲ ଧାର
ଚଞ୍ଚଳା ଦମ୍ଭୋଳି ଶୃପ ମନ୍ଦ୍ର ଗର୍ଜନେ,
ଗଗନେ ବଳିକାମାଳ  ମୟୂର ଗୀତ ମଞ୍ଜୁଳ
ସେବେ 'ବରଷା' ଈଶ୍ୱର ପଦ-ନଳିନେ, ।୩।

ବିମଳ ଦଶ ଦିଶ  ବିମଳ ଗଗନ ଦେଶ
ବିମଳ ସକଳ ଜଳ ରମ୍ୟ ଉଦ୍ୟାନ,
ରମ୍ୟ କାଶ, ଶଶଧର  ଅରବିନ୍ଦ ଇନ୍ଦୀବର
ସେବେ 'ଶରଦ' ଈଶ୍ୱର-ପଦ୍ମ-ଚରଣ ।୪।

ପଲ୍ଲବିତ ଶସ୍ୟଜାତ    ବନେ ଲୋଧ୍ର ପ୍ରସ୍ଫୁଟିତ
ପକ୍ୱପଙ୍କ୍ତି ଧାନ୍ୟ କ୍ଷେତ୍ରେ ଶୁଭ୍ରୁ ଅବନୀ,
ତୁଷାର-ମୁକୁତା ମାଳ    ବକ୍ଷେ ରମ୍ୟ ନଭତଳ
ସେବେ 'ହେମନ୍ତ' ଈଶ୍ୱର ପଦାବ୍ଜ ବନ୍ଦେ ।୫।

ରୋମୀୟ ବସନ ବାସ    ଖଣ୍ଡନ ବେଷ୍ଟୁ ସରସ
ନର୍ଦ୍ଧମାଗ୍ନି ବାଳାତପ ମଦ୍ୟ ସୁଗନ୍ଧ,
ନିର୍ବାତ ସୌଧ ଭବନ    ପୀନ ନବ ଯଉବନ
ସେବେ 'ଶିଶିର' ଈଶ୍ୱର ପଦାର ବନ୍ଦ ।୬।

ସମାପ୍ତି ।

